# ପ୍ରିୟ ପରିଧିରେ

# ଉତ୍ତମ ଉଦ୍ଧବ





ରାଜଧାନୀ ପୁସ୍ତକ ମେଳା-୨୦୧୨ ରେ ଅନୁଷ୍ଠିତ ଶିଶୁ ସାହିତ୍ୟ ଲେଖକ ସମ୍ମିଳନୀରେ




ରାଜ୍ୟ ଜନଶିକ୍ଷା ସାଧନ କେନ୍ଦ୍ର ଦ୍ୱାରା ବିଶିଷ୍ଟ ଲେଖକ ଭାବରେ ସମ୍ମାନିତ ।
ପ୍ରଫେସର ଖଗେଶ୍ୱର ମହାପାତ୍ର, ଡାଇରେକ୍ଟର ଭୁବନାନ୍ଦ ତ୍ରିପାଠୀ ଓ ଡକ୍ଟର ଅଶ୍ୱିନୀ ମିଶ୍ରଙ୍କ ଗହଣରେ

## ପ୍ରିୟ ପରିଧିରେ

# ଉତ୍ତମ ଉଦ୍ଧବ

(ଡକ୍ଟର ଉଦ୍ଧବ ଚରଣ ନାୟକଙ୍କ
୭୦ତମ ଜନ୍ମବାର୍ଷିକୀ ଉପଲକ୍ଷେ ଅଭିନନ୍ଦନ)

୧୭ ଜୁନ୍ ୨୦୧୬


ସମ୍ପାଦନା
ଅଧ୍ୟାପିକା ଡକ୍ଟର ବାସନ୍ତୀ ମହାନ୍ତି
ଅରବିନ୍ଦ ପରିଡ଼ା



ଡକ୍ଟର ଉଦ୍ଧବ ଚରଣ ନାୟକ ଅଭିନନ୍ଦନ କମିଟି
ବରମୁଣ୍ଡା ହାଉସିଂ ବୋର୍ଡ କଲୋନି
ଭୁବନେଶ୍ୱର-୭୫୧୦୦୩

ଡକ୍ଟର ଉଦ୍ଧବ ଚରଣ ନାୟକ ଅଭିନନ୍ଦନ କମିଟି
ବରମୁଣ୍ଡା ହାଉସିଂ ବୋର୍ଡ କଲୋନି
ଭୁବନେଶ୍ୱର-୭୫୧୦୦୩

**ପୃଷ୍ଠପୋଷକ**

ଶ୍ରୀମତୀ ବିଜୟଲକ୍ଷ୍ମୀ ନାୟକ

**ସଭାପତି**

ଅଧ୍ୟାପିକା ଡକ୍ଟର ବାସନ୍ତୀ ମହାନ୍ତି

**ସମ୍ପାଦକ**

ଶ୍ରୀ ବ୍ଲୋରିନ୍ ମହାନ୍ତି

**ସଭ୍ୟ**

ଅରବିନ୍ଦ ପରିଡ଼ା
ନିର୍ଝରିଣୀ ଦାସ
ମାଧବ ଚରଣ ନାୟକ
ମନୋଜ କୁମାର ନାୟକ
ସିଦ୍ଧାର୍ଥ ଶଙ୍କର ନାୟକ
ଅଭିଲିପ୍ସା ପ୍ରିୟଦର୍ଶିନୀ

# ସୂଚନା

ଡକ୍ଟର ଉଦ୍ଧବ ଚରଣ ନାୟକ- ସାଂପ୍ରତିକ ସାହିତ୍ୟ ଜଗତର ଏକ ସ୍ୱର୍ଦ୍ଧିତ ନାମ। ଯୋରନ୍ଦା ମାଟିର ଯୋଗ୍ୟପୁତ୍ର ଭାବରେ ସେ ଓଡ଼ିଆ ସାହିତ୍ୟକୁ ବିଶେଷକରି ଗଦ୍ୟ ସାହିତ୍ୟକୁ କରିଛନ୍ତି ଋଦ୍ଧିମନ୍ତ। ସନ୍ଥକବି ଭୀମଭୋଇଙ୍କ ସମ୍ବନ୍ଧରେ ନିବନ୍ଧ ରଚନା କରି ପିଏଚ୍.ଡି. ଡିଗ୍ରୀଲାଭ କରିଥିବା ଶ୍ରୀଯୁକ୍ତ ନାୟକ ଅଦ୍ୟାବଧି ରଚନା କରିଛନ୍ତି ପଚାଶରୁ ଅଧିକ ପୁସ୍ତକ- ଉଭୟ ତରୁଣ ଓ ପ୍ରବୀଣ ପାଠକମାନଙ୍କ ନିମନ୍ତେ। ଶିଶୁ ସାହିତ୍ୟରେ ମଧ୍ୟ ଶ୍ରୀଯୁକ୍ତ ନାୟକ ସିଦ୍ଧହସ୍ତ। ଏହାର ପ୍ରମାଣ ମିଳେ ଶିଶୁମାନଙ୍କ ନିମନ୍ତେ ସେ ରଚନା କରିଥିବା ଅନେକ ଗଳ୍ପ ଓ ମହାପୁରୁଷମାନଙ୍କ ଜୀବନୀରୁ। ମୋଟାମୋଟି ତେଣୁ ଓଡ଼ିଆ ସାହିତ୍ୟ ଭଣ୍ଡାରକୁ ଶ୍ରୀଯୁକ୍ତ ନାୟକ କରିଛନ୍ତି ସୁସମୃଦ୍ଧ।

ବ୍ୟକ୍ତିଗତ ଭାବରେ ଶ୍ରୀ ନାୟକଙ୍କର ରହିଛି ଅନେକ ସୁଗୁଣ। ସ୍ୱଳ୍ପ ଅଥଚ ମିଷ୍ଟଭାଷୀ ଶ୍ରୀଯୁକ୍ତ ନାୟକ ତାଙ୍କର ସମସାମୟିକ ଅନେକ ଲେଖକଙ୍କ ଭଳି ଆତ୍ମପ୍ରଚାରଠାରୁ ରହି ଆସିଛନ୍ତି ସଦା ସର୍ବଦା ଦୂରରେ। ତାଙ୍କ ସହିତ ଆମର (ଡକ୍ଟର ବାସନ୍ତୀ ମହାନ୍ତି ଓ ମୋର) ପରିଚୟ ସେତେ ଦୀର୍ଘ ଦିନର ନହେଲେ ମଧ୍ୟ ତାଙ୍କର ବ୍ୟକ୍ତିତ୍ୱ ଆମକୁ ପ୍ରଭାବିତ କରିଥିଲା ଯଥେଷ୍ଟ। କଥା ଛଳରେ ଦିନେ ଜାଣିବାକୁ ପାଇଲୁ ଯେ ଆଉ ମାତ୍ର ଅଳ୍ପଦିନ ପରେ ତାଙ୍କର ସତୁରୀ ବର୍ଷ ପୂରଣ ହେବାକୁ ଯାଉଛି। ଏଇ ଅବସରରେ ତାଙ୍କର ଜୀବନାୟନଟିଏ ପ୍ରକାଶ କରିବା ପାଇଁ ଉଦ୍ୟମ ଆରମ୍ଭ ହେଲା; ଅନୁରୋଧ କଲୁ ଶ୍ରୀଯୁକ୍ତ ନାୟକଙ୍କର କେତେଜଣ ସାହିତ୍ୟିକ ବନ୍ଧୁ ଓ ସୁହୃଦ୍‌ଙ୍କୁ ଶ୍ରୀଯୁକ୍ତ ନାୟକଙ୍କ ସମ୍ପର୍କରେ ସେମାନଙ୍କ ନିଜସ୍ୱ ଅନୁଭୂତିକୁ ଆଧାର କରି ଲେଖା ପଠାଇବାକୁ। ଆମର ପରମ ସୌଭାଗ୍ୟ ଯେ ଯଥାସମୟରେ ଶ୍ରୀଯୁକ୍ତ ନାୟକଙ୍କ ବନ୍ଧୁ ଓ ସୁହୃଦ୍‌ମାନଙ୍କ ଲେଖା ଆମ ନିକଟରେ ପହଞ୍ଚିଲା ଯାହାର ଫଳ ସ୍ୱରୂପ ଆଜି ତାଙ୍କ ସତୁରୀ ବର୍ଷ ପୂର୍ତ୍ତି ଉପଲକ୍ଷେ ପ୍ରକାଶ ପାଇ ପାରିଛି 'ପ୍ରିୟ ପରିଧିରେ ଉତ୍ତମ ଉଦ୍ଧବ'। ଆଜିର ଏଇ ପୁଣ୍ୟ ଅବସରରେ ଆମେ ଶ୍ରୀଯୁକ୍ତ ନାୟକଙ୍କ ଦୀର୍ଘ ଜୀବନ କାମନା କରିବା ସହିତ ତାଙ୍କ ସମ୍ପର୍କରେ ନିଜ ନିଜର ଅନୁଭୂତି ଅନୁଭବକୁ ଉପରୋକ୍ତ ପୁସ୍ତକ ଜରିଆରେ ବାଣ୍ଟିବାର ସୁଯୋଗ ଆମ୍ଭମାନଙ୍କୁ ପ୍ରଦାନ କରିଥିବାରୁ ତାଙ୍କର ସମସ୍ତ ବନ୍ଧୁ ଓ ଶୁଭେଚ୍ଛୁଙ୍କୁ ଅଶେଷ ଧନ୍ୟବାଦ ଜଣାଉଛୁ।

ଭୁବନେଶ୍ୱର
୧୭.୦୬.୨୦୧୬

ଡକ୍ଟର ବାସନ୍ତୀ ମହାନ୍ତି
ଅରବିନ୍ଦ ପରିଡ଼ା

# ଯେଉଁମାନେ ଅଭିନନ୍ଦନ ବାଢ଼ିଛନ୍ତି

## ସାହିତ୍ୟିକ ଡକ୍ଟର ଉଦ୍ଧବ ଚରଣ ନାୟକଙ୍କ ୭୦ତମ ଜୟନ୍ତୀ ଉପଲକ୍ଷେ ଅଭିନନ୍ଦନିକା

# ସୁଖମୟ ହେଉ ଆଗାମୀ ଦିନ

**ଡକ୍ଟର ସୁନାମଣି ରାଉତ**

ପୁରାଣ ଯୁଗର ଭକ୍ତ ଉଦ୍ଧବ
ହୁଅ କି ନ ହୁଅ ନାହିଁ ତ କଥା
ଆଜି ତ ଆମରି ସାହିତ୍ୟ ଜଗତେ
ଉଚ୍ଚ ଦିଶୁଛି ତମରି ମଥା ।

ପିଲାଠାରୁ ବୁଢ଼ା ସମସ୍ତଙ୍କ ପାଇଁ
ତମରି କଲମ ଆଙ୍କିଛି ଛବି
କେତେବେଳେ ତମେ ଦାର୍ଶନିକ ସନ୍ଥ
କେବେ ପ୍ରାବନ୍ଧିକ, ରସିକ କବି ।

'ମଜା ଆନନ୍ଦର କାହାଣୀ ମାଳା'ରୁ
'ମଧୁବାବୁଙ୍କର ବୁଦ୍ଧିର କଥା'
'ଭଲଭଲ ଗପ', 'ଆଲିବାବା କଥା'
'ଭୀମଭୋଇଙ୍କର ଗ୍ରନ୍ଥାବଳୀ'
ଓଡ଼ିଆ, ଇଂରାଜୀ ଅନେକ ଭାଷାରେ
ତମରି ଲେଖନୀ ଯାଇଛି ବଳି ।

ତମ ସାଧନାର ସିଦ୍ଧି ସକାଶେ
କେତେ ପୁରସ୍କାର, ସମ୍ମାନ ମାନ-
ଲାଭ କରି ଆମ ବାଣୀ ଭଣ୍ଡାରକୁ
ପୂର୍ଣ୍ଣ କରିଛି ହେ ମହାମାନ୍ୟ !

କର୍ମମୟ ଏ ଯାତ୍ରା ପଥରେ
କେତେ ପଦ କେତେ ପଦବୀ ପାଇ
ମଣିଷ ସେବାରେ କର୍ତ୍ତବ୍ୟ କରିଛ
ସେଥିପାଇଁ ଖେଦ, ଶୋଚନା ନାହିଁ ।

ଜୀବନ ପଥରେ ଚାଲିଚାଲି ଆସି
ସତୁରୀ ବର୍ଷରେ ଥାପିଛ ପାଦ
ଆଗରେ ପଡ଼ିଛି ପଥ ବହୁଦୂର
ଦୂର ହେଉ ଦୁଃଖ ଓ ଅବସାଦ ।

ସମୟ ବେଳାରେ ଫୁଟି ଦିଶୁଥାଉ
ତମ ସାଧନାର ଚରଣ ଚିହ୍ନ
ଈଶ୍ୱରଙ୍କ ପାଖେ ପ୍ରାର୍ଥନା କରୁଛି
ସୁଖମୟ ହେଉ ଆଗାମୀ ଦିନ !!

*ରାଜାବଗିଚା, କଟକ-୯*
*ମୋ: ୯୪୩୭୧୯୨୮୯୦*



ଉଦ୍ଧବଙ୍କ ବ୍ୟକ୍ତିତ୍ୱର ଏକ ବିଶେଷ ବିଭାଗ ହେଲା ତାଙ୍କର ବ୍ୟବହାର, ଆତ୍ମୀୟ ଭାବ। ନିଜକୁ ନିଜଠାରୁ ବଡ଼ କରି ଦେଖେଇ ହେବାର ଆଚରଣ ଓ ଉଚ୍ଚାରଣ ମୁଁ କେବେ ତାଙ୍କ ପାଖରେ ଲକ୍ଷ୍ୟ କରିନାହିଁ।

# ପ୍ରିୟ ପରିଧିରେ

# ସୁଲେଖକ ଉଦ୍ଧବ ଚରଣ

ଅଧ୍ୟାପକ ବିଶ୍ୱରଞ୍ଜନ

ଭୁବନେଶ୍ୱରରେ ବିଭିନ୍ନ ସମୟରେ ଆୟୋଜିତ ସଭା-ସମ୍ମିଳନୀମାନଙ୍କରେ ହିଁ ଆମେ ପରସ୍ପରକୁ ଭେଟୁ। ଏ ସଭାଗୁଡ଼ିକ ଥାଏ ମୁଖ୍ୟତଃ ଶିକ୍ଷା ଓ ସାହିତ୍ୟ ସଂପର୍କିତ। ଗୋଟିଏ ଗୋଟିଏ ଅନୁଷ୍ଠାନରେ ଆମେ ଉଭୟେ ବକ୍ତା ଭାବରେ ମଧ୍ୟ ଯୋଗ ଦେଇଛୁ। ସୁତରାଂ ପରସ୍ପର ସହିତ ସାକ୍ଷାତ ଓ ଆଳାପ ଆଲୋଚନା ସାମୟିକ। ମାତ୍ର ସଂପର୍କ ହେଉଛି ସମୟାତୀତ, ହାର୍ଦ୍ଦିକ। ଏ ସଂପର୍କର ଅସଲ ସେତୁ ହେଲା ସାହିତ୍ୟ। ଲେଖାଲେଖି ମାଧ୍ୟମରେ ହିଁ, ଆମର ଭେଟଭାଟ ଚାଲିଥାଏ। ବିନା ବାର୍ତ୍ତାଳାପରେ ମଧ୍ୟ ଆମେ ପରସ୍ପରକୁ ସ୍ମରଣ କରୁ। ଏ ସମ୍ପର୍କରେ ମଳିଧୂଳି ଲାଗିବାର ନାହିଁ। କାରଣ କୌଣସି ସର୍ତ୍ତ ବା ସ୍ୱାର୍ଥ ନ ଥାଏ ଏଭଳି ସମ୍ପର୍କ ସ୍ଥାପନରେ। ରକ୍ତଗତ ନୁହେଁ, ଏହା ହେଉଛି ରୁଚିଗତ ସମ୍ପର୍କ। ରୁଚିର ସମ୍ପର୍କ; ଯାହାକୁ ମୁଁ ରକ୍ତସମ୍ପର୍କଠାରୁ ଅଧିକ ମୂଲ୍ୟବାନ ମନେ କରେ। ହଁ, ଏହିଭଳି ସମ୍ପର୍କରେ ମୁଁ ବନ୍ଧା ସୁଲେଖକ ଉଦ୍ଧବ ଚରଣ ନାୟକଙ୍କ ସହିତ। ଭାବରେ ଭାବରେ ହିଁ ଆମର ନିକଟତା। କୌଣସି ଅଭାବ ଓ ଅଭିଯୋଗର ପ୍ରବେଶ ଅଧିକାର ନାହିଁ ଏହା ଭିତରେ।

ବନ୍ଧୁ ଉଦ୍ଧବ ନାୟକ କେବଳ ଜଣେ ସୁଲେଖକ, ସୁସଂଗଠକ ନଥିଲେ, ଭାରତ ସରକାରଙ୍କ ଦ୍ୱାରା ପରିଚାଳିତ ରାଜ୍ୟ ଜନଶିକ୍ଷା ସାଧନକେନ୍ଦ୍ରରେ ଜଣେ କର୍ତ୍ତବ୍ୟନିଷ୍ଠ ପଦାଧିକାରୀ ଭାବରେ ନିଜ ବୃତ୍ତିଗତ ଉତ୍କର୍ଷର ପରିଚୟ ମଧ୍ୟ ଦେଇଥିଲେ। ବୟସ୍କଙ୍କ ସାକ୍ଷରତା ପାଇଁ ସେ ଅନେକ ପୁସ୍ତକ ପ୍ରଣୟନ କରିଛନ୍ତି ଏବଂ ଏଥିପାଇଁ ଗଠିତ

ଲେଖକ ପରିଷଦରେ ଜଣେ ମାର୍ଗଦର୍ଶକ ଭାବରେ ନିଜର ଭୂମିକା ନିର୍ବାହ କରିଛନ୍ତି। ଏସବୁ ବ୍ୟତୀତ ବିଭିନ୍ନ ସମୟରେ ଶିକ୍ଷା, ସାହିତ୍ୟ, ରାଜନୀତି ତଥା ସାଂପ୍ରତିକ ବିଭିନ୍ନ ସମସ୍ୟାକୁ ନେଇ ସମ୍ବାଦପତ୍ରରେ ସ୍ତମ୍ଭ ରଚନା ଦ୍ୱାରା ସେ ସାଧାରଣ ପାଠକର ସଶ୍ରଦ୍ଧ ଦୃଷ୍ଟି ଆକର୍ଷଣ କରିପାରିଛନ୍ତି। ମାତ୍ର ମୁଁ ଉଦ୍ଧବବାବୁଙ୍କୁ ଜାଣେ, ଭୀମଭୋଇଙ୍କ ଜୀବନ-ଦର୍ଶନ ଓ ମହିମାଧର୍ମର ଜଣେ ପ୍ରମୁଖ ଆଲୋଚକ ଭାବରେ। ମୋ ଜାଣିବାରେ ଭୀମଭୋଇଙ୍କ ସମ୍ପର୍କରେ ଗବେଷଣା କରି ଡକ୍ଟରେଟ୍ ଡିଗ୍ରୀ ହାସଲ କରିବାରେ ଉଦ୍ଧବ ନାୟକ ହେଉଛନ୍ତି ପ୍ରଥମ।

ଅନ୍ୟ ଏକ କାରଣରୁ ଉଦ୍ଧବବାବୁଙ୍କ ଲେଖକୀୟତା ପ୍ରତି ମୋର ଆସ୍ଥା ଓ ସମ୍ମାନ ବୃଦ୍ଧି ପାଇଛି। ତାହା ହେଲା ତାଙ୍କ ଦ୍ୱାରା ରଚିତ ଓଡ଼ିଶାର ରାଜନୈତିକ ଇତିହାସ ସମ୍ପର୍କିତ ପୁସ୍ତକ। ରାଜନୀତି ବିଜ୍ଞାନର ଜଣେ ଛାତ୍ର ଏବଂ ପ୍ରବୀଣ ଅଧ୍ୟାପକ ଭାବରେ, ମୁଁ ଯେଉଁ କାର୍ଯ୍ୟ କରିବା କଥା, ସେ କାର୍ଯ ସୁଚାରୁରୂପେ ସମ୍ପନ୍ନ କରିଛନ୍ତି ବନ୍ଧୁ ଉଦ୍ଧବ ନାୟକ। 'ଆମ ଓଡ଼ିଶା' ପକ୍ଷରୁ ପ୍ରକାଶିତ ଏହି ପୁସ୍ତକର ଏକାଧିକ ସଂସ୍କରଣ ଇତି ମଧ୍ୟରେ ପ୍ରକାଶ ପାଇସାରିଲାଣି। ରାଜନୀତିର ଛାତ୍ର, ଶିକ୍ଷକ, ଗବେଷକ ତଥା ରାଜନେତା ଏବଂ ଲୋକପ୍ରତିନିଧିମାନଙ୍କ ପାଇଁ ଏହା ଅତ୍ୟନ୍ତ ଉପାଦେୟ।

ବୃତ୍ତିଗତ ଜୀବନରେ ଶିକ୍ଷା ସହିତ ଏବଂ ପ୍ରବୃତ୍ତି ସାଧନାରେ ପ୍ରବୃତ୍ତ ବ୍ୟକ୍ତିମାନଙ୍କ ଜୀବନରେ ଅବସର ନଥାଏ। କାରଣ ଜୀବନ ଦ୍ୱାରା ଶିଖିବା ଓ ଶିଖେଇବା ସେମାନଙ୍କର ଅସଲ ଧର୍ମ ହୋଇଯାଇଥାଏ। ସୁତରାଂ ଅବସର ପରେ ଉଦ୍ଧବବାବୁ ସର୍ଜନଶୀଳତା ସାଂଗକୁ ନାନା ସାଂଗଠନିକ କାର୍ଯ୍ୟରେ ନିଜକୁ ଜଡ଼ିତ ରଖି ଏକ ସକ୍ରିୟ ତଥା ଚଳଚଞ୍ଚଳ ଜୀବନ ଅତିବାହିତ କରୁଛନ୍ତି। ଖୋପ ଭିତରର ମଣିଷ ହୋଇ ରହିଯାଇନାହାନ୍ତି। ଜଣେ ଚେତନଶୀଳ ଯାତ୍ରୀ ଭାବରେ ନିଜର ଯାତ୍ରା ଜାରି ରଖିଛନ୍ତି। ଉଦ୍ଧବଙ୍କ ବ୍ୟକ୍ତିତ୍ୱର ଏକ ବିଶେଷ ବିଭାଗ ହେଲା ତାଙ୍କର ବ୍ୟବହାର, ଆତ୍ମୀୟ ଭାବ। ନିଜକୁ ନିଜଠାରୁ ବଡ଼ କରି ଦେଖେଇ ହେବାର ଆଚରଣ ଓ ଉଚ୍ଚାରଣ ମୁଁ କେବେ ତାଙ୍କ ପାଖରେ ଲକ୍ଷ୍ୟ କରିନାହିଁ। ଅହଂକାରଶୂନ୍ୟ ସରଳତାରେ ସେ ସଭିଙ୍କୁ ଆପଣାର କରିପାରନ୍ତି। ମୋର ସୌଭାଗ୍ୟ ଯେ, ସେ ମୋତେ ଆପଣାର ପ୍ରିୟଜନଙ୍କ ମଧ୍ୟରେ ସାମିଲ କରିଛନ୍ତି। ମୁଁ ମଧ୍ୟ ଉଦ୍ଧବଙ୍କ ଭାବ ବଂଧନରେ ବାନ୍ଧି ହେବାର ସୁଯୋଗ ପାଇଁ ଅତ୍ୟନ୍ତ ଆନନ୍ଦିତ। ସତୁରି ବର୍ଷରେ ପଦାର୍ପଣ କରି ନିଜକୁ ତଥାପି ସର୍ଜନଶୀଳ ରଖିପାରିଥିବାରୁ ମୁଁ ଡକ୍ଟର ଉଦ୍ଧବଚରଣ ନାୟକଙ୍କ ଦୀର୍ଘ ନିରାମୟ ଜୀବନ କାମନା କରୁଛି ଏବଂ ଆଶା କରୁଛି, ପ୍ରତିବର୍ଷ ସେ ନିଜର ସାରସ୍ୱତ କୃତିରେ ଓଡ଼ିଶାର ବାଣୀଭଣ୍ଡାରକୁ ସମୃଦ୍ଧ କରନ୍ତୁ।



ସମସ୍ତେ ବିସ୍ମରି ଯାଆନ୍ତି ସେମାନେ ଗୋଟିଏ ସ୍ଥାନରୁ ଯାତ୍ରା ଆରମ୍ଭ କରିଛନ୍ତି ଓ ଗୋଟିଏ ସ୍ଥାନରେ ପହଞ୍ଚିବେ। ତେଣୁ ଜଣେ ନିଜ ପରିସୀମା ଟପିବା କଷ୍ଟକର ନ ହେଲେ ହେଁ କେହି ସବୁ ବିଷୟରେ ଜ୍ଞାନ ହାସଲ କରିବାକୁ ସ୍ପୃହା କରିବେ ନାହିଁ। କିନ୍ତୁ ଅଳ୍ପ କେତେ ସୀମା ସଚେତନ ବିଜ୍ଞଲୋକ ସବୁ ଦିଗକୁ ଦୃଷ୍ଟି ରଖି ଥାଆନ୍ତି।

ସାମାଜିକ ସ୍ରୋତର ସାହିତ୍ୟିକ

# ଡକ୍ଟର ଉଦ୍ଧବ ଚରଣ ନାୟକ

ଡାକ୍ତର ଇନ୍ଦ୍ରମଣି ଜେନା

ଡକ୍ଟର ଉଦ୍ଧବ ଚରଣ ନାୟକ ଓଡିଶାର ଜଣେ ଲବ୍ଧପ୍ରତିଷ୍ଠ ସାହିତ୍ୟିକ। ଓଡିଶା ମାଟିରୁ ଅଙ୍କୁରିତ ହୋଇଥିବା ମହିମାଧର୍ମ ବିଷୟରେ ଗବେଷଣା କରି 'ମହିମାଧର୍ମର ଇତିବୃତ୍ତ ଓ ସାହିତ୍ୟ' ସମ୍ବନ୍ଧୀୟ ସନ୍ଦର୍ଭ ଉପସ୍ଥାପନା କରି ଉତ୍କଳ ବିଶ୍ୱବିଦ୍ୟାଳୟରୁ ଡକ୍ଟରେଟ୍ ଲାଭ କରିଛନ୍ତି। ଆଶ୍ଚର୍ଯ୍ୟର କଥା, ତାଙ୍କ ଜନ୍ମସ୍ଥାନ ଧର୍ମପୀଠ ମହିମାଗାଦିରେ, ଯେତିକି ପୁଣ୍ୟ ବଳରେ ସେ ଏହି ଭାଗ୍ୟ ପାଇଛନ୍ତି, ତା ଠାରୁ ଅଧିକ ପୁଣ୍ୟ ଅର୍ଜନ କରିଛନ୍ତି ମହିମାଧର୍ମର ଇତିହାସ, ସମାଜରେ ଲୋକମାନଙ୍କର ଆଦର, ଓଡିଶାର ଧର୍ମାକାଶରେ ଓ ସାହିତ୍ୟଧାରାରେ ମହିମାଧର୍ମର ପରିପ୍ରକାଶ ବିଷୟରେ ସବିଶେଷ ତଥ୍ୟ ସଙ୍କଳିତ କରି ପାଠକଙ୍କ ପାଖରେ ନିଜର ଅନ୍ୟୁନ ତିନିଗୋଟି ପୁସ୍ତକ ପରିବେଷଣ କରି। ଏହି ସଂକ୍ରାନ୍ତରେ ତାଙ୍କୁ ସମ୍ମାନଜନକ 'ଭୀମ ଭୋଇ ସମ୍ମାନ' ମିଳିଛି, ମାତ୍ର ପ୍ରକୃତ ମହିମାଧର୍ମର ମହନୀୟତା ପ୍ରତିପାଦନ କରି ନିଜ ବ୍ୟକ୍ତିତ୍ୱର ଆଧ୍ୟାତ୍ମିକତାର ପରିଚୟ ଦେଇଛନ୍ତି। ମହିମାଧର୍ମକୁ ଓଡିଶାର ଶିକ୍ଷିତ ସମ୍ପ୍ରଦାୟ ସମ୍ମୁଖକୁ ଆଣିବାରେ ତାଙ୍କର ଭୂମିକା ଅଦ୍ୱିତୀୟ।

ବହୁବର୍ଷ ଡକ୍ଟର ନାୟକଙ୍କ ସଂସର୍ଗରେ ଆସି ମୋତେ ହୃଦ୍‌ବୋଧ ହୋଇଛି ମୁଁ ଜଣେ ବିଜ୍ଞ ସମାଜସେବୀ ସାହିତ୍ୟିକଙ୍କ ସହ ପରିଚିତ ହୋଇପାରିବା ମୋର ସୌଭାଗ୍ୟରେ ପରିଣତ ହୋଇଛି। ତାଙ୍କର ବ୍ୟକ୍ତିତ୍ୱ ମୋ ପାଇଁ ପ୍ରେରଣାର ଉତ୍ସ

ହୋଇପାରିଛି । ଜଣେ ଚିକିତ୍ସକ ହିସାବରେ ଯଦି କେବେ ତାଙ୍କ ନାଡି ପରୀକ୍ଷା କରିବାର ସୁଯୋଗ ସିଏ ମୋତେ ଦେଇଛନ୍ତି, ମୁଁ ତାଙ୍କ ଶିରା ପ୍ରଶିରାରେ କେତେ ଇତିହାସ, ପ୍ରୟୋଗାତ୍ମକ ସରଳ ଉପମା, ସମାଜରେ ମତ ସୃଷ୍ଟିକାରୀ ଜ୍ଞାନର ଭାଷା ସ୍ପନ୍ଦନ ସୃଷ୍ଟି କରିବାର ଅନୁଭବ କରିଛି । ପ୍ରତିଟି ରଚିତ ପୁସ୍ତକ ମୋତେ ଉପହାର ଦେବାର ଫଳ ଏହା ହୋଇପାରେ, କିନ୍ତୁ ଯେଉଁ କେତେ କ୍ଷଣ ସେ ମୋ ପାଖରେ ଥାଆନ୍ତି, ତାଙ୍କର ନିଷ୍କପଟ ଓ ସରଳ ଜୀବନର ଉଦାହରଣ ମୁଁ ପାଇଥାଏ । ବହୁତ ନମ୍ର ଓ ବିଜ୍ଞ । ଆଜିକାଲିକାର ଚଳଣିରେ ତାଙ୍କ ପରି ଜଣେ ଅମାୟିକ ବ୍ୟକ୍ତି ମିଳିବା କଷ୍ଟକର ।

ଆରମ୍ଭରୁ ସମସ୍ତ ଜ୍ଞାନକୁ ଗୋଟିଏ ମାପକରେ ଦେଖାଯାଉଥିଲା, ମୂଳ ବିଷୟ ଥିଲା ଦର୍ଶନ । ସେଇ ମାପରୁ ଆଜି ବି ଦର୍ଶନରେ ବିଜ୍ଞ ବା ଡକ୍ଟରେଟ୍ ଇନ ଫିଲୋସଫି ଉପାଧି ମିଳେ । କିନ୍ତୁ ଏବେ ଜ୍ଞାନକୁ ଏପରି ଭାଗ ଭାଗ କରିଦିଆ ଯାଇଛି, ସମସ୍ତେ ନିଜକୁ ପୃଥକ୍ ପୃଥକ୍ ନୌକାରେ ଅଲଗା ଅଲଗା ଜ୍ଞାନ ଆଧାରରେ ଗତିଶୀଳ । ସମସ୍ତେ ବିସ୍ମରି ଯାଆନ୍ତି ସେମାନେ ଗୋଟିଏ ସ୍ଥାନରୁ ଯାତ୍ରା ଆରମ୍ଭ କରିଛନ୍ତି ଓ ଗୋଟିଏ ସ୍ଥାନରେ ପହଞ୍ଚିବେ । ତେଣୁ ଜଣେ ନିଜ ପରିସୀମା ଟପିବା କଷ୍ଟକର ନ ହେଲେ ହେଁ କେହି ସବୁ ବିଷୟରେ ଜ୍ଞାନ ହାସଲ କରିବାକୁ ସ୍ପୃହା କରିବେ ନାହିଁ । କିନ୍ତୁ ଅଳ୍ପ କେତେ ସୀମା ସଚେତନ ବିଜ୍ଞଲୋକ ସବୁ ଦିଗକୁ ଦୃଷ୍ଟି ରଖି ଥାଆନ୍ତି । ମୋର ଏପରି କହିବାର ଅଭିପ୍ରାୟ ଡକ୍ଟର ନାୟକ ନିଜ ଓଡିଆ ବିଷୟରୁ ବାହାରି ଲୋକ ପ୍ରଶାସନ ବିଷୟରେ ବି ସମାନ କୃତିତ୍ୱ ଅର୍ଜନ କରି ନିଜ ଲେଖନୀଶକ୍ତିକୁ ଦ୍ୱିଗୁଣିତ କରିପାରିଛନ୍ତି । ସେ ନିଜ ଓଡିଆ ସାହିତ୍ୟ ସୀମା ମଧ୍ୟରେ ଆବଦ୍ଧ ହୋଇ ନାହାନ୍ତି ।

ସେ ବହୁ ଉପାଦେୟ 'ଓଡିଶାର ରାଜନୈତିକ ଇତିହାସ' ରଚନା କରି ନିଜ ସାହିତ୍ୟିକ ଓ ପ୍ରଶାସନିକ ବୁଦ୍ଧିମତ୍ତାର ପରିଚୟ ଦେଇଛନ୍ତି । ଏହା ପ୍ରତି ଓଡିଆଙ୍କର ପଠନ ଯୋଗ୍ୟ ପୁସ୍ତକ, ଓଡିଶାର ରାଜନୈତିକ ଓ ପ୍ରଶାସନିକ ଜନ୍ମ ବୃତ୍ତାନ୍ତର ତଥ୍ୟମାଳାରେ ପରିପୂର୍ଣ୍ଣ । ଅନେକ ବିବରଣୀ ରହିଛି ଓଡିଆ ପ୍ରାଣ ଓ ଓଡିଆ ଜୀବନ ପ୍ରବାହ ସମ୍ବନ୍ଧରେ । ଏହା ଲେଖକଙ୍କର ସାମାଜିକ ମୂଲ୍ୟବୋଧ ଓ ଉଚ୍ଚ ମାନବିକତାର ପରିଚୟ ଦିଏ । ଏଥିପାଇଁ ସେ ଅନେକ ସମ୍ମାନର ଅଧିକାରୀ ।

ମୋତେ ଥରେ କହିଥିଲେ, ତାଙ୍କର ଲେଖିବାର ପୃଷ୍ଠଭୂମିର ମେରୁ ହେଉଛି ଇତିହାସ । ସତରେ ବିନା ତଥ୍ୟ ବା ଉଦାହରଣରେ ସିଏ ସାହିତ୍ୟ ରଚନା କରିବାକୁ ପ୍ରୟାସ କରନ୍ତି ନାହିଁ । ତାଙ୍କର ବହୁ ପ୍ରବନ୍ଧ ବିଭିନ୍ନ ବିଷୟକୁ ନେଇ । ଅନେକ ଶିଶୁ ସାହିତ୍ୟ ସୃଷ୍ଟି କରିଛନ୍ତି ସେ । ବହୁ କ୍ଷେତ୍ରରେ ସିଏ ମଣ୍ଡିତ ହୋଇଛନ୍ତି ଅନେକ ସମ୍ମାନରେ, ଯାହାକି ଗୋଟିଏ

ଲମ୍ବା ଧାଡିହେବ। ଭୀମ ଭୋଇ ସମ୍ମାନ ବ୍ୟତୀତ ଓଡିଶା ବିଜ୍ଞାନ ଏକାଡେମୀ ପୁରସ୍କାର, ମୀନାବଜାର ଶିଶୁ ସାହିତ୍ୟ ପୁରସ୍କାର ସେ ପାଇଛନ୍ତି। ଆହୁରି କେତେ ଯେ ସମ୍ମାନ ଅର୍ଜନ କରିପାରିଛନ୍ତି ନିଜର ସମାଜ ପାଇଁ ଉପାଦେୟ ସୃଜନୀଶକ୍ତି ବଳରେ।

ଜୀବନରେ ଅନେକ ଆଦର୍ଶ ଉପସ୍ଥାପନ କରିଥିବାରୁ ମୁଁ ତାଙ୍କର ୭୦ତମ ଜନ୍ମବର୍ଷରେ ଅଭିନନ୍ଦନ ଜ୍ଞାପନ କରୁଛି। ତାଙ୍କପାଇଁ ନିରାକାରଙ୍କ ପାଖରେ ଦୀର୍ଘାୟୁ କାମନା କରୁଛି। ତା ସହିତ ଭବିଷ୍ୟତରେ ତାଙ୍କଠାରୁ ବହୁ ରଚନା ପାଇବାକୁ ଆଶାବାଦୀ।


ଡାକ୍ତର ଇନ୍ଦ୍ରମଣି ଜେନା, ଏମ୍.ଡି. (ମେଡିସିନ୍)<br>
ସମାରୋହ, ୧୨୮, ଡୁମୁଡୁମା (କ), ଖଣ୍ଡଗିରି,<br>
ଭୁବନେଶ୍ୱର-୭୫୧୦୩୦, ମୋ - ୯୪୩୮୦୦୭୫୦୯





ନେହେରୁ ଯୁବ ପ୍ରତିଷ୍ଠାନ, ଭୁବନେଶ୍ୱରଠାରେ ଅନୁଷ୍ଠିତ 'ଶିଶୁର ବୌଦ୍ଧିକ ବିକାଶରେ ମା'ର ଭୂମିକା' ଶୀର୍ଷକ ଆଲୋଚନାଚକ୍ରରେ ମୁଖ୍ୟ ଅତିଥି, ୦୨.୦୧.୨୦୦୭



# ଭିନ୍ନ ନାୟକ

ଆଜିର ସମୟ ହେଉଛି 'କାର୍ଯ୍ୟଘେନାପ୍ରୀତି'ର ସମୟ। ଆଜିର ଦୁନିଆରେ ବିନା ପ୍ରୟୋଜନରେ କେହି କାହାକୁ ଯଥାମାନ୍ୟ ଦେବାକୁ କୁଣ୍ଠିତ। ଏଣୁ କାହାଠାରୁ କିଛିର ଅପେକ୍ଷା ନରଖି, ନିଜେ ବିଶ୍ୱାସ କରୁଥିବା କାର୍ଯ୍ୟରେ ସେ ଆଗେଇଗଲେ ଓଡ଼ିଶା ଓ ଓଡ଼ିଆ ସାହିତ୍ୟ ତାଙ୍କଠାରୁ ଅନେକ କିଛି ପାଇପାରିବ।

ଅସିତ ମହାନ୍ତି

ନାଆଁ ତାଙ୍କର ଉଦ୍ଧବ ଚରଣ ନାୟକ। କିନ୍ତୁ ମୋ ଦୃଷ୍ଟିରେ ସେ ଜଣେ ଭିନ୍ନ ନାୟକ। କାରଣ, 'ଓଡ଼ିଶା ରାଜନୀତିର ଇତିହାସ' ପରି ବହିଟିଏ ମୋ ଜାଣିବାରେ ଆମ ଓଡ଼ିଆ ଭାଷାରେ ନଥିଲା। ସେପରି ତଥ୍ୟପୂର୍ଣ୍ଣ ପୁସ୍ତକ ସେ ହିଁ ଆମକୁ ଉପହାର ଦେଲେ।

ପ୍ରାୟ ଦଶବର୍ଷ ତଳର କଥା। ୨୦୦୭ ମସିହା ଜୁନ୍ ମାସରେ ଉଦ୍ଧବବାବୁଙ୍କର ଗୋଟିଏ ଲେଖା 'ପୌରୁଷ'ରେ ପ୍ରକାଶ ପାଇଥିଲା। ତାହାର ଶୀର୍ଷକ ଥିଲା 'ସ୍ୱତନ୍ତ୍ର ଓଡ଼ିଶାର ପ୍ରଥମ ଗଭର୍ଣ୍ଣର, ବିଧାନସଭା ଓ ମନ୍ତ୍ରିମଣ୍ଡଳ'। ପରବର୍ତ୍ତୀ ରଥଯାତ୍ରା ସଂଖ୍ୟା ପାଇଁ ଶ୍ରୀଜଗନ୍ନାଥଙ୍କ ତତ୍ତ୍ୱ ସଂପର୍କରେ ଆଉ ଗୋଟିଏ ଲେଖା ବି ସେ ପଠାଇଥିଲେ। କିନ୍ତୁ ଖଣ୍ଡିଏ ଚିଠି ସହିତ ସେହି ଲେଖାଟିକୁ ମୁଁ ତୁରନ୍ତ ତାଙ୍କ ପାଖକୁ ପଠାଇଦେଇଥିଲି। ଚାହିଁଥିଲି, ଓଡ଼ିଶା ରାଜନୀତିର ଇତିହାସ ବାବଦରେ ସେ କ୍ରମାଗତ ଭାବରେ ଲେଖା ଦିଅନ୍ତୁ। ତାହାର ପ୍ରତ୍ୟୁତ୍ତରରେ ଗୋଟିଏ ପରେ ଗୋଟିଏ ଲେଖା ସେ ଦେଇ ଚାଲିଲେ ଏବଂ 'ପୌରୁଷ'ର 'ଓଡ଼ିଶା ଅଧ୍ୟାୟ'ରେ ତାହା ନିୟମିତ ଭାବରେ ପ୍ରକାଶ ପାଇ ଚାଲିଲା। ଏହିପରି ଭାବରେ ପ୍ରସ୍ତୁତ ହୋଇଗଲା 'ଓଡ଼ିଶା ରାଜନୀତିର ଇତିହାସ'। ଏବେ 'ଆମ ଓଡ଼ିଶା' ପ୍ରକାଶନର ପ୍ରମୁଖ ପୁସ୍ତକ ମଧ୍ୟରୁ ତାହା ଗୋଟିଏ।

ଲେଖାଗୁଡ଼ିକ 'ପୌରୁଷ'ରେ ଧାରାବାହିକ ଭାବରେ ପ୍ରକାଶ ପାଇବା ବେଳକୁ ତାହାର ପ୍ରତିଷ୍ଠାତା ଜାନକୀ ବଲ୍ଲଭ ପଟ୍ଟନାୟକ ଥିଲେ ଆସାମର ରାଜ୍ୟପାଳ।

ଲେଖାଗୁଡ଼ିକ ପଢ଼ି ସେ ଉଦ୍ଧବ ବାବୁଙ୍କୁ ଭେଟିବାକୁ ଚାହିଁଥିଲେ । ଥରେ ଓଡ଼ିଶା ଆସିଥିବା ବେଳେ ସାଙ୍ଗରେ ଉଦ୍ଧବବାବୁଙ୍କୁ ନେଇ ମୁଁ ତାଙ୍କ ପାଖକୁ ଯାଇଥିଲି ଏବଂ ସେ ତାଙ୍କ ସହିତ ଦୀର୍ଘ ଆଲୋଚନା ମଧ୍ୟ କରିଥିଲେ । ଉଦ୍ଧବବାବୁ ସେଥିରେ ଖୁବ୍ ଉତ୍ସାହିତ ହେବା ସହିତ ପୁସ୍ତକଟିକୁ ଜାନକୀବାବୁଙ୍କୁ ଉତ୍ସର୍ଗ ମଧ୍ୟ କଲେ ।

ଓଡ଼ିଶା ସରକାରଙ୍କ ବିଜ୍ଞାନ, କାରିଗରି କୌଶଳ ଓ ପରିବେଶ ବିଭାଗରେ କାମ କରୁଥିଲେ ଉଦ୍ଧବବାବୁ । କିନ୍ତୁ ସାହିତ୍ୟ, ସଂସ୍କୃତି ଓ ଇତିହାସ ପ୍ରତି ତାଙ୍କର ସ୍ୱତନ୍ତ୍ର ରୁଚି ଥିଲା । ମୁଁ ତାଙ୍କୁ ଜାଣିଥିଲି- ଓଡ଼ିଆରେ ଏମ୍.ଏ. ପଢ଼ିବା ବେଳୁ, 'ବ୍ରଜନାଥ ବଡ଼ଜେନାଙ୍କ ଜୀବନୀ ଓ ସାହିତ୍ୟ' ପୁସ୍ତକରୁ । ଶୁଣିଛି, 'ଭାରତୀୟ ହିନ୍ଦୁ ଗୃହସ୍ଥଧର୍ମ' ନାମରେ ଆଉ ଗୋଟିଏ ବହି ମଧ୍ୟ ସେ ଲେଖିଛନ୍ତି । କିନ୍ତୁ ତାହା ଦେଖିବାର ସୌଭାଗ୍ୟ ମୋର ହୋଇ ନାହିଁ । ପ୍ରବନ୍ଧ ରଚନା ସହିତ ଗବେଷଣା, ଶିଶୁ ସାହିତ୍ୟ ଓ ସାକ୍ଷରତା କ୍ଷେତ୍ରରେ ମଧ୍ୟ ତାଙ୍କର ବେଶ୍ ପ୍ରବେଶ ଅଛି । ବିଶେଷକରି 'ମହିମାଧର୍ମ ଓ ଭୀମଭୋଇ'ଙ୍କ ସଂପର୍କରେ ସେ ଅନେକ କାମ କରିଛନ୍ତି । ସମ୍ଭବତଃ ଢେଙ୍କାନାଳ ଜିଲ୍ଲାର ମହିମାଗାଦିଠାରେ ଜନ୍ମ ହୋଇଥିବା ହେତୁ, ଭୀମଭୋଇ ଏବଂ ତାଙ୍କ ଧର୍ମ ଓ ସାହିତ୍ୟ ଉଦ୍ଧବବାବୁଙ୍କୁ ବିଶେଷଭାବରେ ଆକର୍ଷିତ କରିଛି । ସେହିପରି କିଶୋର ସହିଦ ବାଜିରାଉତ ମଧ୍ୟ ତାଙ୍କର ଆଉ ଏକ ଆକର୍ଷଣ । ବାଜି ରାଉତଙ୍କ ସଂପର୍କରେ ତାଙ୍କର ଅନ୍ୟ ଏକ ପୁସ୍ତକ ମଧ୍ୟ 'ଆମ ଓଡ଼ିଶା' ପକ୍ଷରୁ ଏବେ ପ୍ରକାଶ ଅପେକ୍ଷାରେ ।

ନିକଟରୁ ଯେତିକି ଦେଖିଛି ଓ ବୁଝିଛି, ମନେହୋଇଛି ଯେ ଉଦ୍ଧବବାବୁ ଯେତିକି ଆତ୍ମାଭିମାନୀ, ସେତିକି ସ୍ପର୍ଶକାତର । ସମଧର୍ମୀଙ୍କଠାରୁ ଯଥାଯୋଗ୍ୟ ବ୍ୟବହାର ନପାଇଲେ ସେ ନିରୁତ୍ସାହ ହୋଇପଡ଼ନ୍ତି । କିନ୍ତୁ ଯେଉଁ ଢେଙ୍କାନାଳରେ ତାଙ୍କର ଜନ୍ମ, ସେଇ ଢେଙ୍କାନାଳର ବଡ଼କବି ଥିଲେ ବ୍ରଜନାଥ ବଡ଼ଜେନା । ସେ ତାଙ୍କ 'ଚତୁର ବିନୋଦ'ର 'ପ୍ରୀତି ବିନୋଦ'ରେ 'କାର୍ଯ୍ୟଘେନା ପ୍ରୀତି' କଥା କହିଛନ୍ତି । ଆଜିର ସମୟ ହେଉଛି 'କାର୍ଯ୍ୟଘେନାପ୍ରୀତି'ର ସମୟ । ଆଜିର ଦୁନିଆରେ ବିନା ପ୍ରୟୋଜନରେ କେହି କାହାକୁ ଯଥାମାନ୍ୟ ଦେବାକୁ କୁଣ୍ଠିତ । ଏଣୁ କାହାଠାରୁ କିଛିର ଅପେକ୍ଷା ନରଖି, ନିଜେ ବିଶ୍ୱାସ କରୁଥିବା କାର୍ଯ୍ୟରେ ସେ ଆଗେଇଗଲେ ଓଡ଼ିଶା ଓ ଓଡ଼ିଆ ସାହିତ୍ୟ ତାଙ୍କଠାରୁ ଅନେକ କିଛି ପାଇପାରିବ ।

ମୁଁ ଆଶା କରେ, ଆଗାମୀ ଦିନରେ ଉଦ୍ଧବବାବୁ ପୂର୍ବପରି ନିଜର ରୁଚି ଅନୁମୋଦିତ କାର୍ଯ୍ୟରେ ବ୍ରତୀ ରହିବେ ଏବଂ ଆମକୁ ଆହୁରି ଅନେକ ଉପାଦେୟ ପୁସ୍ତକ ଉପହାର ଦେବେ ।



ଓଡ଼ିଶାର ଆଗଧାଡ଼ିର ଲେଖକମାନଙ୍କ ମଧ୍ୟରେ ତାଙ୍କ ସ୍ଥାନକୁ ସୁନିଶ୍ଚିତ କରୁଥିଲେ ସୁଦ୍ଧା କେବେହେଲେ ସେ ନିଜକୁ ବିଜ୍ଞାପିତ କରିବାର ଚେଷ୍ଟା କରିନାହାନ୍ତି । ସମୟର କଷଟି ପଥରରେ ତାଙ୍କର ଲେଖାଗୁଡ଼ିକ କଷି ହୋଇଛନ୍ତି; କଷି ହୋଇଛନ୍ତି ଉଦ୍ଧବବାବୁ ବି ।

# ଉତ୍କର୍ଷ ଉଦ୍ଧବ

ଅରବିନ୍ଦ ପରିଡ଼ା

ଶ୍ରୀମଦ୍ ଭାଗବତ ଗୀତାର କଥା । ଏକଦା ଶ୍ରୀକୃଷ୍ଣଙ୍କୁ ପ୍ରାର୍ଥନା କରି ଉଦ୍ଧବ କହିଲେ, 'ପ୍ରଭୁ, ଆପଣଙ୍କ ଭକ୍ତମାନଙ୍କ ମନୋବାଞ୍ଛା ପୂର୍ଣ୍ଣ କରିସାରି, ସେମାନଙ୍କୁ ସବୁ ସୁଖ ଶାନ୍ତି ପ୍ରଦାନ କରିସାରି, ଆପଣ ଧରାପୃଷ୍ଠରୁ ବିଦାୟ ନେଇଯିବେ । ତା'ପରେ କେଉଁଠି ଆମେ ଆପଣଙ୍କର ଏ ଶ୍ରୀମୁଖ ଦର୍ଶନ କରିବାର ସୁଯୋଗ ପାଇବୁ, ଶ୍ରୀମୁଖ ନିଃସୃତ ଦର୍ଶନ ଶାସ୍ତ୍ର ଓ ଧର୍ମ ସମ୍ବନ୍ଧୀୟ ଆଲୋଚନାମାନ ଶ୍ରବଣ କରିବାର ସୁଯୋଗ ପାଇବୁ ?' ଉଦ୍ଧବଙ୍କ ପ୍ରଶ୍ନର ଉତ୍ତରରେ ଶ୍ରୀକୃଷ୍ଣ କହିଥିଲେ, 'ଉଦ୍ଧବ, ପୂର୍ବରୁ ଯେତେବେଳେ ବି ମୁଁ ଧରାପୃଷ୍ଠରୁ ବିଦାୟ ନେଉଥିଲି, ସେତେବେଳେ ମୁଁ ବୈକୁଣ୍ଠ ନହେଲେ କ୍ଷୀରସାଗରକୁ ଫେରି ଯାଉଥିଲି । କିନ୍ତୁ ଏଥର ବିଦାୟ ନେବା ପରେ ମୁଁ ଶ୍ରୀମଦ୍ ଭାଗବତ ରୂପରେ ବିରାଜିତ ରସ ସମୁଦ୍ରରେ ବାସ କରିବି ।' ଏଣୁ ଶ୍ରୀକୃଷ୍ଣ ଯଦିଓ ବାହ୍ୟଦୃଷ୍ଟିରେ ଧରାପୃଷ୍ଠରୁ ବିଦାୟ ନେଇଥିଲେ, କିନ୍ତୁ ଭଗବତ୍ ଗୀତାର ପ୍ରତ୍ୟେକଟି ଶ୍ଳୋକ ମାଧ୍ୟମରେ ରହିଛନ୍ତି ଜୀବିତ ।

ଏଠାରେ ଉପରୋକ୍ତ ପ୍ରାଚୀନ କଥା ଅବତାରଣା କରିବାର ଉଦ୍ଦେଶ୍ୟ- ଶ୍ରୀମଦ୍ ଭାଗବତ ଗୀତାର ଉଦ୍ଧବଙ୍କ ଭଳି ଅଲେଖ ଧର୍ମର ପ୍ରବର୍ତ୍ତକ ମହିମା ଗାଦିର ମହାନ ସନ୍ଥକବି ଭୀମଭୋଇଙ୍କୁ ତାଙ୍କର ରଚନାବଳୀ ମାଧ୍ୟମରେ ବଞ୍ଚାଇ ରଖିବାକୁ ସେହି ଗାଦି ସନ୍ନିକଟସ୍ଥ ଏକ ଗ୍ରାମରେ ଜନ୍ମଗ୍ରହଣ କରି ସଂପ୍ରତି ସତୁରି ବର୍ଷରେ ପଦାର୍ପଣ କରିଥିବା ଡକ୍ଟର ଉଦ୍ଧବ ନାୟକଙ୍କଦ୍ୱାରା ସଂପାଦିତ କାର୍ଯ୍ୟାବଳୀ ସମ୍ବନ୍ଧରେ ଏକ

ସଂକ୍ଷିପ୍ତ ଆଲୋଚନା କରିବା। ଏଥିରେ ଦ୍ୱିମତ ନାହିଁ ଯେ ସନ୍ଥକବି ଭୀମଭୋଇଙ୍କୁ ବଞ୍ଚାଇ ରଖିବା ନିମନ୍ତେ ସ୍ୱୟଂ ଭୀମଭୋଇଙ୍କ ରଚିତ ଅଜସ୍ର ଭଜନ ଜଣାଣ ହିଁ ଯଥେଷ୍ଟ। କିନ୍ତୁ ସମୟ ସହିତ ତାଳ ଦେଇ ଜନମାନସରୁ ଲିଭି ଲିଭି ଆସୁଥିବା ସେହି ଅମର କୃତୀଗୁଡ଼ିକୁ ଯଦି ସମ୍ବେଦନଶୀଳତା ପ୍ରଦର୍ଶନପୂର୍ବକ ଆଲୋଚନା ପର୍ଯ୍ୟାଲୋଚନା କରା ନଯାଏ, ତା'ହେଲେ ସେଗୁଡ଼ିକ କାଳର କରାଳ ସ୍ରୋତରେ ବିଲୀନ ହୋଇଯିବାର ସମ୍ଭାବନା ଉଦ୍ରେକ ହେବନାହିଁ କି? ତେଣୁ ପିଢ଼ି ପରେ ପିଢ଼ି ସେସବୁର ତର୍ଜମା, ଆଲୋଚନା, ପର୍ଯ୍ୟାଲୋଚନା ହେବାର ଯଥେଷ୍ଟ ଆବଶ୍ୟକତା ରହିଛି। ଆଉ ମାଆମାଟିର ସୁଯୋଗ୍ୟ ମଣିଷ ଭାବରେ ଉଦ୍ଧବବାବୁ ତାହା କରିବାରେ ସମର୍ଥ ହୋଇଛନ୍ତି ବୋଲି ବିଶ୍ୱାସ। ଭୀମଭୋଇଙ୍କ ସେହି ଚିରନ୍ତନ ଉଦ୍ଦାତ୍ତ ବାଣୀ- '...ମୋ ଜୀବନ ପଛେ ନର୍କେ ପଡ଼ିଥାଉ ଜଗତ ଉଦ୍ଧାର ହେଉ'କୁ ସତେ ଯେମିତି ପାଥେୟ କରିଛନ୍ତି ଉଦ୍ଧବବାବୁ ଆଉ ନିଜ ଜୀବନର ସୁଖ ସ୍ୱାଚ୍ଛନ୍ଦ୍ୟକୁ ବଳି ଦେଇ ଭୀମଭୋଇଙ୍କୁ ପ୍ରତିଟି ଛୋଟପିଲାଠାରୁ ଆରମ୍ଭ କରି ବୟସ୍କମାନଙ୍କ ନିକଟରେ ପହଞ୍ଚାଇବା ନିମନ୍ତେ ରଚନା କରିଛନ୍ତି ଶିଶୁ ସାହିତ୍ୟ, ନିବନ୍ଧ, ପ୍ରବନ୍ଧ; ଭୀମଭୋଇଙ୍କ ସ୍ମୃତିକୁ ଜନମାନସରେ ଉଜ୍ଜୀବିତ ରଖିବା ପାଇଁ ତାଙ୍କର ଆବିର୍ଭାବ ଓ ତିରୋଧାନ ଦିବସରେ ନିଜ ଉଦ୍ୟମରେ ରାଜ୍ୟର ପ୍ରବୀଣ ଓ ତରୁଣ ଆଲୋଚକମାନଙ୍କୁ ନେଇ ଆୟୋଜନ କରିଛନ୍ତି ଆଲୋଚନାଚକ୍ର ଇତ୍ୟାଦି।

ଉଦ୍ଧବବାବୁଙ୍କ କୃତି କେବଳ ଏତିକିରେ ସୀମିତ ନୁହେଁ। ସାହିତ୍ୟର ଆହୁରି ଅନେକ ବିଭାଗରେ ସେ କରିଛନ୍ତି ଲେଖନୀ ଚାଳନା। ବିଶେଷକରି ଗଦ୍ୟ ସାହିତ୍ୟରେ। ଦୈନିକ ସମ୍ବାଦପତ୍ର 'ସମ୍ବାଦ'ର ଏକ ଶାଖା ଅନୁଷ୍ଠାନ ଭାବରେ କାର୍ଯ୍ୟ କରୁଥିବା 'ଆମ ଓଡ଼ିଶା' ଦ୍ୱାରା ପ୍ରକାଶିତ ଉଦ୍ଧବବାବୁଙ୍କ ରଚିତ 'ଓଡ଼ିଶା ରାଜନୀତିର ଇତିହାସ' ସମସାମୟିକ ଓଡ଼ିଶା ରାଜନୀତିର ଏକ ସଚିତ୍ର ରୂପ ଟୋଳି ଧରେ ପାଠକମାନଙ୍କ ସମ୍ମୁଖରେ। ଏହି ଗ୍ରନ୍ଥରେ ଉଦ୍ଧବବାବୁ ବିସ୍ତୃତ ଭାବରେ ବର୍ଣ୍ଣନା କରିଛନ୍ତି ଓଡ଼ିଶାର ଜନ୍ମ ହେବାଠାରୁ ଆରମ୍ଭ କରି ବର୍ତ୍ତମାନ ସମୟର ଶାସକମାନଙ୍କ ସମ୍ବନ୍ଧରେ। ଏହାର ଭାଷା ଯେପରି ସରଳ, ସେହିପରି ବୋଧଗମ୍ୟ। ରଚନା ଶୈଳୀ ଏତେ ସାବଲୀଳ ଯେ ପାଠକ ବହିଟିକୁ ପଢ଼ିବାକୁ ଆରମ୍ଭ କରିବା ମାତ୍ରେ ଶେଷ କରିବା ପାଇଁ ଉତ୍କଣ୍ଠିତ ହୋଇଉଠେ।

ଶିଶୁ ସାହିତ୍ୟରେ ଉଦ୍ଧବବାବୁଙ୍କର ବିଶେଷ ରୁଚି। ଏକଦା ଭୀମଭୋଇଙ୍କ ଉପରେ ଛୋଟପିଲାଙ୍କ ବହି ଖଣ୍ଡିଏ ମୋତେ ଉପହାର ସ୍ୱରୂପ ପ୍ରଦାନ କଲାବେଳେ କଥା ଛଳରେ ଛୋଟପିଲାମାନଙ୍କ ପାଇଁ ସେ ପ୍ରାୟ ଚାଳିଶ ଜଣ ମହାପୁରୁଷଙ୍କ ସମ୍ପର୍କରେ ଚାଳିଶ ଖଣ୍ଡ ବହି ରଚନା କରିବାକୁ ଚାହାନ୍ତି ଏବଂ ଏଇ କାମ ସେ ଆରମ୍ଭ କରି

ସାରିଛନ୍ତି ବୋଲି ମୋତେ କହିବା ପରେ ମୁଁ ତାଙ୍କର ପ୍ରତିଶ୍ରୁତିବଦ୍ଧତାକୁ ଦେଖି ବିସ୍ମିତ ହୋଇଥିଲି। ତାଙ୍କର ଏପରି କଥା ମୋ ମନରେ ତାଙ୍କ ପ୍ରତି ବିଶେଷ ଶ୍ରଦ୍ଧା ଓ ସମ୍ମାନ ଜାଗ୍ରତ କରାଇଛି, କାରଣ ଏକେ ତ ଶିଶୁମାନଙ୍କ ପାଇଁ ପୁସ୍ତକ ରଚନା କରିବା ଅତ୍ୟନ୍ତ ଦୁରୂହ ବ୍ୟାପାର। ପୁଣି ତା' ସହିତ ଓଡ଼ିଶାରେ ମୌଳିକ ଶିଶୁ ସାହିତ୍ୟ ଓ ଶିଶୁମାନଙ୍କ ମନକୁ ଛୁଇଁଲା ଭଳି ସରଳ ସାବଲୀଳ ଭାଷାରେ ରଚିତ ମହାପୁରୁଷମାନଙ୍କ ଜୀବନୀର ସଂଖ୍ୟା ଖୁବ୍ କମ୍। ତେଣୁ ଉଦ୍ଧବବାବୁ ଯେ ବାସ୍ତବରେ ଏକ ଗୁରୁ ଦାୟିତ୍ୱ ସଂପାଦନ କରିବାକୁ ଯାଉଛନ୍ତି ଏବଂ କେତେକାଂଶରେ କରି ସାରିଛନ୍ତି, ସେଥିରେ ତିଳେମାତ୍ର ସନ୍ଦେହ ନଥିଲା। ଅତଏବ, ମୋ ଦୃଷ୍ଟିରେ ସେ ଜଣେ ଉତ୍କର୍ଷ ସାଧକଠାରୁ କୌଣସି ଗୁଣରେ କମ୍ ନୁହନ୍ତି।

ଉଦ୍ଧବବାବୁଙ୍କ ସହିତ ମୋର ପରିଚୟ ବେଶୀ ଦିନର ନୁହେଁ, ଏଇମାତ୍ର ଚାରି ପାଞ୍ଚବର୍ଷର। ଦୈନିକ ସମ୍ବାଦପତ୍ର 'ପ୍ରମେୟ'ର ସମ୍ପାଦକୀୟ ପୃଷ୍ଠାର ଦାୟିତ୍ୱ ବହନ କରିବା ଅବସରରେ ତାଙ୍କ ସହିତ ମୋର ପରିଚୟ। ତାଙ୍କର ସରଳ, ଅମାୟିକ ବ୍ୟବହାର, ଜ୍ଞାନଗର୍ଭକ ସଂକ୍ଷିପ୍ତ କଥା ମୋତେ ଆକୃଷ୍ଟ କରିଥିଲା ତାଙ୍କ ପ୍ରତି। ଆଉ ତା' ପରଠୁ ତାଙ୍କୁ ମୁଁ ମୋର ଜଣେ ଅଗ୍ରଜ ଭାବି ନେଇଛି। ତାଙ୍କର ସବୁ ଲେଖା ପଢ଼ିବାର ସୁଯୋଗ ମୋ ଭାଗ୍ୟରେ ଜୁଟିନାହିଁ। ତଥାପି ଯେତିକି ଲେଖା ପଢ଼ିଛି, ସେସବୁ ନିଶ୍ଚିତ ଭାବରେ ଉତ୍କର୍ଷ ଲେଖାର ସ୍ଥାନ ଦାବି କରେ। ତେଣୁ ବିସ୍ମିତ ହୁଏ ଯେତେବେଳେ ଦେଖେ ଯେ ତାଙ୍କର ଲେଖାସବୁ (ଅନ୍ତତଃପକ୍ଷେ ମୁଁ ଯେତିକି ପାଠ କରିଛି) ଓଡ଼ିଶାର ଆଗଧାଡ଼ିର ଲେଖକମାନଙ୍କ ମଧ୍ୟରେ ତାଙ୍କ ସ୍ଥାନକୁ ସୁନିଶ୍ଚିତ କରୁଥିଲେ ସୁଦ୍ଧା କେବେହେଲେ ସେ ନିଜକୁ ବିଜ୍ଞାପିତ କରିବାର ଚେଷ୍ଟା କରିନାହାନ୍ତି। ସମୟର କଷଟି ପଥରରେ ତାଙ୍କର ଲେଖାଗୁଡ଼ିକ କଷି ହୋଇଛନ୍ତି; କଷି ହୋଇଛନ୍ତି ଉଦ୍ଧବବାବୁ ବି। ତଥାପି କେବେହେଲେ ଦେଖିବାକୁ ମିଳେନାହିଁ ତାଙ୍କ ନିକଟରେ ଗର୍ବ ଅହମିକାର ଲେଶମାତ୍ର ଚିହ୍ନ। ଆଜି ସତୁରିଟି ବସନ୍ତକୁ ଉପଭୋଗ କରି ସାରିଥିବାର ବୟସରେ ପାଦ ଥାପୁଥିବା ଯୋରନ୍ଦା ମାଟି ତଥା ଓଡ଼ିଶାର ଏହି ସ୍ୱନାମଧନ୍ୟ ଲେଖକଙ୍କ ପ୍ରତି ଅନ୍ତରର ଗଭୀର ଶ୍ରଦ୍ଧା ଓ ସମ୍ମାନ ଜ୍ଞାପନ କରିବା ସହିତ କାମନା କରୁଛି- ଈଶ୍ୱର ତାଙ୍କୁ ଶହେଟି ଶରତ ଦେଖିବାକୁ ଆୟୁଷ ଦିଅନ୍ତୁ। ମୋ ପ୍ରତି ତାଙ୍କର ସ୍ନେହ ଶ୍ରଦ୍ଧା ଏମିତି ଅମଳିନ ଥାଉ ଓ ଆଗାମୀ ସମୟରେ ତାଙ୍କର ପ୍ରତ୍ୟେକଟି କାର୍ଯ୍ୟ ଉତ୍କୃଷ୍ଟ ହେଉ।

ସଂପାଦନା ପରାମର୍ଶଦାତା, 'ନିତିଦିନ'
ବେଣୁପୁର, ଖୋର୍ଦ୍ଧା, ୭୫୨୧୦୧, ମୋ: ୮୬୫୮୮୦୭୫୦୬



# ଡକ୍ଟର ଉଦ୍ଧବ ଚରଣ ନାୟକଙ୍କୁ ଅଭିନନ୍ଦନ

ଉଦ୍ଧବବାବୁଙ୍କ ରଚନାଗୁଡ଼ିକ ସରଳ ଓ ଶିକ୍ଷଣୀୟ। ତାଙ୍କ ରଚିତ ଅନେକ କ୍ଷୁଦ୍ର ଜୀବନୀ, କାହାଣୀ ଓ ଶିଶୁ ସାହିତ୍ୟ ପାଠକ ମହଲରେ ବେଶ୍ ଆଦୃତ। ଜନଶିକ୍ଷା ସାଧନକେନ୍ଦ୍ରରେ ରଚିତ ବୟସ୍କ ପାଠକଙ୍କ ଉପଯୋଗୀ ଅନେକ ପାଠ୍ୟପୁସ୍ତକର ସେ ରଚୟିତା।

ଭୁବନାନନ୍ଦ ତ୍ରିପାଠୀ

ଡକ୍ଟର ଉଦ୍ଧବ ଚରଣ ନାୟକ ଭୁବନେଶ୍ୱର ସାରସ୍ୱତ ମଣ୍ଡଳୀରେ ଏକ ପରିଚିତ ବ୍ୟକ୍ତି। ଜଣେ ସୁଲେଖକ ଭାବେ ଜନଶିକ୍ଷା କ୍ଷେତ୍ରର ବିଶେଷଜ୍ଞ ଭାବେ ତଥା ମହିମାଧର୍ମ ତତ୍ତ୍ୱର ଆଗଧାଡ଼ିର ଗବେଷକ ଭାବେ ସମଗ୍ର ଓଡ଼ିଶାରେ ତାଙ୍କର ଖ୍ୟାତି ରହିଛି। ତାଙ୍କ ସହିତ ମୋର ପରିଚୟ ହୋଇଥିଲା ଆଜିକୁ ଠିକ୍ ଷୋହଳ ବର୍ଷ ତଳେ।

୨୦୦୦ ମସିହାରେ ମୁଁ ରାଜ୍ୟ ଜନଶିକ୍ଷା ସାଧନକେନ୍ଦ୍ରରେ ନିର୍ଦ୍ଦେଶକ ଭାବେ ଯୋଗଦେବା ବେଳେ ଏହି ଅନୁଷ୍ଠାନର ଉଦ୍ଦେଶ୍ୟ ଓ କାର୍ଯ୍ୟକ୍ରମ ବିଷୟରେ ଜାଣିବାକୁ ଚାହିଁଲି। ଅନୁଷ୍ଠାନ ସମ୍ପର୍କରେ ଯେଉଁ କେତେଜଣ ମୋତେ ପ୍ରାରମ୍ଭିକ ଭାବରେ ସ୍ପଷ୍ଟ ଚିତ୍ର ଦେଇଥିଲେ ସେମାନଙ୍କ ଭିତରୁ ଜଣେ ଥିଲେ ଉଦ୍ଧବବାବୁ। ମୋର ପୃଷ୍ଠଭୂମି ଥିଲା ପରିଚାଳନା କ୍ଷେତ୍ର, ଏଣୁ ଜନଶିକ୍ଷା ଅନୁଷ୍ଠାନରେ ମୁଁ ସଫଳ ହେବି କି ନାହିଁ ଏ ସମ୍ପର୍କରେ ସେତେବେଳେ ଅନେକ ଦିଗରୁ ପ୍ରଶ୍ନ ଚିହ୍ନମାନ ଦେଖା ଦେଇଥିଲା। ମୋ ସହିତ ପରିଚୟ ହେବାପରେ, ମୋର ସ୍ୱଭାବ ଚରିତ୍ରକୁ ତଥା ଭାଷା ପ୍ରତି ଥିବା ଆଗ୍ରହକୁ ଠିକ୍ ଭାବେ ବୁଝିବା ପରେ ଉଦ୍ଧବବାବୁ ମୋତେ ସାହସ ଦେଇଥିଲେ। ସେତେବେଳକୁ ଉଦ୍ଧବବାବୁ ଜନଶିକ୍ଷା କେନ୍ଦ୍ରରୁ ଅବ୍ୟାହତି ନେଇ ତାଙ୍କ ମୂଳ ଚାକିରି କ୍ଷେତ୍ର ସରକାରୀ ବିଭାଗକୁ ଫେରିଯାଇଥାନ୍ତି। ମାତ୍ର ଜନଶିକ୍ଷା ସାଧନ କେନ୍ଦ୍ରର ବିଭିନ୍ନ କାର୍ଯ୍ୟକ୍ରମରେ ସେ ଆଲୋଚକ ଭାବେ ଯୋଗ ଦେଉଥିଲେ ଏବଂ ସେ ମୋ କାର୍ଯ୍ୟଶୈଳୀର ମୁକ୍ତ ସମର୍ଥନ

କରୁଥିଲେ। ସାଧନ କେନ୍ଦ୍ରରେ ଦୁଇବର୍ଷର କାର୍ଯ୍ୟକାଳ ଭିତରେ ତାଙ୍କ ପାଖରୁ ସମୟ ସମୟରେ ସହଯୋଗ ଓ ପରାମର୍ଶ ଲାଭ କରି ଅନୁଷ୍ଠାନର କାର୍ଯ୍ୟକ୍ରମଗୁଡ଼ିକୁ ସଫଳ ରୂପାୟନ କରିବାରେ ମୁଁ ସକ୍ଷମ ହୋଇଥିଲି।

ଉଦ୍ଧବବାବୁ ଓ ମୁଁ ଉଭୟ ଢେଙ୍କାନାଳ ଜିଲ୍ଲାର ମୂଳ ବାସିନ୍ଦା। ସଂଯୋଗକୁ ଏବେ ଉଭୟ ଭୁବନେଶ୍ୱରରେ ବାସ କରୁଛୁ। ସେ ବରମୁଣ୍ଡାରେ ରହୁଥିବାବେଳେ ମୁଁ ସୈନିକ ସ୍କୁଲ ଅଞ୍ଚଳରେ। ଢେଙ୍କାନାଳ ଜିଲ୍ଲାରେ ଆମ ଦୁଇଜଣଙ୍କର ଅନେକ ପାରସ୍ପରିକ ବନ୍ଧୁ ଥିବାରୁ, ଜନଶିକ୍ଷା ସାଧନ କେନ୍ଦ୍ରର କାର୍ଯ୍ୟକାଳଠାରୁ ଆଜିସୁଦ୍ଧା ତାଙ୍କ ସହିତ ମୋର ଘନିଷ୍ଠତା ବଜାୟ ରହିଛି।

ଉଦ୍ଧବବାବୁ ମୋ'ଠାରୁ ବୟସରେ ବଡ଼, ଏଣୁ ସେ ମୋ'ଠାରୁ ସାତବର୍ଷ ପୂର୍ବରୁ ଅବସର ନେଇଛନ୍ତି। ଏବେ ମୋର ଅବସର ପରେ ଉଭୟ ବିଭିନ୍ନ ସାମାଜିକ ଓ ସାରସ୍ୱତ କାର୍ଯ୍ୟକ୍ରମରେ ଏକାଠି ହେବାର ସୁଯୋଗ ମିଳୁଛି।

'ଓଡ଼ିଆ ଲେଖକ ଲେଖିକା ପରିଷଦ'ର ଗଠନ ପରେ ଉଦ୍ଧବବାବୁ ଏଥିରେ ଆଜୀବନ ସଭ୍ୟ ଭାବେ ଯୋଗ ଦେଇଛନ୍ତି ଏବଂ ପରିଷଦ ଦ୍ୱାରା ପ୍ରକାଶିତ ବନ୍ଧୁ-ପ୍ରବନ୍ଧ ସଂକଳନର ସେ ଗତ ତିନିବର୍ଷ ହେବ ସମ୍ପାଦକ ଅଛନ୍ତି।

ଉଦ୍ଧବବାବୁଙ୍କ ରଚନାଗୁଡ଼ିକ ସରଳ ଓ ଶିକ୍ଷଣୀୟ। ତାଙ୍କ ରଚିତ ଅନେକ କ୍ଷୁଦ୍ର ଜୀବନୀ, କାହାଣୀ ଓ ଶିଶୁ ସାହିତ୍ୟ ପାଠକ ମହଲରେ ବେଶ୍ ଆଦୃତ। ଜନଶିକ୍ଷା ସାଧନକେନ୍ଦ୍ରରେ ରଚିତ ବୟସ୍କ ପାଠକଙ୍କ ଉପଯୋଗୀ ଅନେକ ପାଠ୍ୟପୁସ୍ତକର ସେ ରଚୟିତା। ଜନଶିକ୍ଷା ସମ୍ପର୍କିତ ଅନେକ ସର୍ବଭାରତୀୟ କର୍ମଶାଳାରେ ଆଲୋଚକ ଭାବେ ଯୋଗଦେଇ ଉଦ୍ଧବବାବୁ ଉଚ୍ଚ ପ୍ରଶଂସିତ ହୋଇଛନ୍ତି।

ଉଦ୍ଧବବାବୁ ଜଣେ ଯୋଗ୍ୟ ପ୍ରଶିକ୍ଷକ ମଧ୍ୟ। ଜନଶିକ୍ଷା ସାଧନକେନ୍ଦ୍ରରେ ତଥା ଅନ୍ୟତ୍ର ଆୟୋଜିତ ଭିନ୍ନଭିନ୍ନ ପ୍ରଶିକ୍ଷଣ କାର୍ଯ୍ୟକ୍ରମରେ ସେ ଜଣେ ଉଚ୍ଚକୋଟୀର ପ୍ରଶିକ୍ଷକ ଭାବେ ପରିଗଣିତ। ପୁସ୍ତକ ରଚନା ତଥା ପ୍ରଶିକ୍ଷକର ଅନୁଭୂତିକୁ ଆଧାର କରି ଡ. ଉଦ୍ଧବ ନାୟକ ଦକ୍ଷିଣ ଓଡ଼ିଶାରେ 'ଅଗ୍ରଗାମୀ' ଅନୁଷ୍ଠାନ ଦ୍ୱାରା ପରିଚାଳିତ ଜନଶିକ୍ଷା ସାଧନକେନ୍ଦ୍ରର ନିର୍ଦ୍ଦେଶକ ପଦରେ ପ୍ରାୟ ଏକବର୍ଷ ପାଇଁ ଅବସ୍ଥାପିତ ଥିଲେ।

ନିଜ ଧର୍ମପତ୍ନୀ ବିଜୟଲକ୍ଷ୍ମୀ ଦେବୀଙ୍କର ପ୍ରେରଣା ଓ ସହଯୋଗ ବଳରେ ଉଦ୍ଧବବାବୁ ଆଜି ସମାଜରେ ନିଜର ପରିଚୟ ସୃଷ୍ଟି କରିପାରିଛନ୍ତି। ଶ୍ରୀମତୀ ନାୟକ ଜଣେ ଶିକ୍ଷୟିତ୍ରୀ ହେଲେ ସୁଦ୍ଧା ନିଜ ସ୍ୱାମୀ ତଥା କନ୍ୟାମାନଙ୍କର ସେବା କ୍ଷେତ୍ରରେ ସଦା ତତ୍ପର ରହିଆସିଛନ୍ତି।

ଉଦ୍ଧବବାବୁ ଆଜି ସତୁରୀ ବର୍ଷ ବୟସରେ ଉପନୀତ। ବୟସ ବଢ଼ିଥିଲେ ସୁଦ୍ଧା ମୋ ଜାଣିବାରେ ତାଙ୍କ ନିକଟରେ ଯୁବ ସୁଲଭ ଉତ୍ସାହ, ଆଗ୍ରହ ଓ କର୍ମଶକ୍ତି ଭରପୂର ହୋଇ ରହିଛି। ନିଜର ସ୍କୁଟି ଖଣ୍ଡିକ ଧରି ଭୁବନେଶ୍ୱରର ବିଭିନ୍ନ ସଭା ସମିତିରେ ଯୋଗ ଦେବାବେଳେ ତାଙ୍କ ନିକଟରେ ଥକିଯିବାର ଲକ୍ଷଣ ଦେଖାଯାଏ ନାହିଁ। ତାଙ୍କର ହସହସ ମୁହଁ, ଧୀର କୋମଳ ବଚନ ଏବଂ କାମପାଇଁ ଆଗେଇ ଆସିବାର ଆଗ୍ରହ ଆଜିସୁଦ୍ଧା ସବୁବେଳେ ଦେଖିବାକୁ ମିଳୁଛି।

ଆଜିର ଏଇ ଶୁଭ ଦିନରେ ଈଶ୍ୱରଙ୍କୁ ପ୍ରାର୍ଥନା କରିବି, ଉଦ୍ଧବବାବୁଙ୍କର ନିରାମୟ ତଥା କର୍ମମୟ ଜୀବନ ଏଇପରି ଚାଲିଥାଉ। ତାଙ୍କ କଲମ ଚାଳନାରେ ଓଡ଼ିଆ ଭାଷାର ସାରସ୍ୱତ ଭଣ୍ଡାର ପୂରିଉଠୁ ଏବଂ ଯୁବପିଢ଼ି ତାଙ୍କରି ଆଦର୍ଶରେ ଅଗ୍ରସର ହୋଇ ଆମ ମାତୃଭାଷା ଓ ମାତୃଭୂମିର ଟେକ ରଖିବାକୁ ଅଣ୍ଟା ଭିଡ଼ି ବାହାରି ଆସନ୍ତୁ।

ଭୁବନେଶ୍ୱର, ମୋ: ୮୮୯୫୫୨୩୫୬୧



୧୩ରୁ ୧୭ ଫେବ୍ରୁଆରୀ ୨୦୦୬ରେ ମଣିପୁରର ରାଜଧାନୀ ଇମ୍ଫାଲ ରାଜ୍ୟ ଅତିଥି ଭବନଠାରେ ଅନୁଷ୍ଠିତ ସାକ୍ଷରତା ପୁସ୍ତକ ପ୍ରସ୍ତୁତି କର୍ମଶାଳାରେ ମଣିପୁରର ଲେଖକମାନଙ୍କ ସହ



# ଭକ୍ତ ସାଧକ- ଉଦ୍ଧବ ଚରଣ

ଉଦ୍ଧବଭାଇ ଜଣେ ଅତ୍ୟନ୍ତ ସ୍ନେହୀ ତଥା ଅମାୟିକ ବ୍ୟକ୍ତି। ଜଣେ ବ୍ୟକ୍ତିଠାରେ ଜ୍ଞାନ ସହ ଏହିସବୁ ଗୁଣ ଥିଲେ ତାଙ୍କର ମର୍ଯ୍ୟାଦା ବହୁ ପରିମାଣରେ ବୃଦ୍ଧି ପାଇଥାଏ। ସେ ବଡ଼ଭାଇ ହିସାବରେ ଆମର ମାର୍ଗଦର୍ଶକ ତଥା ପ୍ରେରଣାର ଉତ୍ସ।

ଡକ୍ଟର ସଦାନନ୍ଦ ଅଗ୍ରୱାଲ

୧୯୮୪-୮୫ ମସିହାର କଥା। ଭୁବନେଶ୍ୱରର ୟୁନିଟ୍-୮, କ୍ୱାର୍ଟର ନଂ- ସି.୪୨ରେ ରହୁଥାନ୍ତି ପ୍ରଖ୍ୟାତ ଐତିହାସିକ ପ୍ରଫେସର ନବୀନ କୁମାର ସାହୁ। ସେ ସମ୍ବଲପୁର ବିଶ୍ୱବିଦ୍ୟାଳୟର କୁଳପତି ପଦରୁ ଇସ୍ତଫା ପ୍ରଦାନ କଲା ପରେ ତତ୍କାଳୀନ ମୁଖ୍ୟମନ୍ତ୍ରୀ ତଥା ପ୍ରଜ୍ଞାପୁରୁଷ ଜାନକୀବଲ୍ଲଭ ପଟ୍ଟନାୟକ ତାଙ୍କ ପାଇଁ ଏକ ସ୍ୱତନ୍ତ୍ର ପଦବୀ ସୃଷ୍ଟି କରି 'ଖାରବେଳ' ଏବଂ 'ବୀର ସୁରେନ୍ଦ୍ର ସାଏ' ନାମକ ଦୁଇଗୋଟି ପୁସ୍ତକ ରଚନା କରିବା ଦାୟିତ୍ୱ ଅର୍ପଣ କରିଥିଲେ। ମୁଁ ନବୀନ ବାବୁଙ୍କ ପ୍ରିୟ ଶିଷ୍ୟ। ଶହୀଦନଗର ସ୍ଥିତ ମୋ ଭାଇର ଘରୁ ସାଇକେଲରେ ସେଠାକୁ ଯାଉଥିଲି। ନବୀନବାବୁ ଅନର୍ଗଳ ଡାକୁଥିଲେ ଏବଂ ତାଙ୍କ ଷ୍ଟେନୋ ଗନ୍ଧର୍ବବାବୁ ସେମିତି ଟାଇପ କରି ଚାଲୁଥିଲେ। ତାଙ୍କ ସହ ଆଉ ଜଣେ ଯୁବକ ମଧ୍ୟ ଅଧ୍ୟୟନରେ ନିମଗ୍ନ ରହୁଥିଲେ। ସାର୍‌ଙ୍କ ଠାରୁ ଜାଣିଲି ଯେ ତାଙ୍କ ନାମ 'ଉଦ୍ଧବ ଚରଣ ନାୟକ'। ସେ ମହିମାଧର୍ମ ଓ ଭୀମଭୋଇଙ୍କ ସମ୍ବନ୍ଧରେ ଗବେଷଣା କରୁଛନ୍ତି। ସାର୍ ତାଙ୍କ ତତ୍ତ୍ୱାବଧାରକ। ମହିମାଧର୍ମର ମୁଖ୍ୟ କେନ୍ଦ୍ରକୁ ଧାରଣ କରି ପବିତ୍ରୀକୃତ ଯୋରନ୍ଦାଗ୍ରାମ (ଢେଙ୍କାନାଳ ଜିଲ୍ଲା) ତାଙ୍କର ବାସସ୍ଥାନ। ମୁଁ ଐତିହାସିକ ତଥା ଲିପିତତ୍ତ୍ୱ ସମ୍ବନ୍ଧରେ ଗବେଷଣା କରିବା ପାଇଁ ସାର୍‌ଙ୍କ ପାଖକୁ ଯାଉଥିଲି। ଉଦ୍ଧବବାବୁଙ୍କ ଗବେଷଣା କ୍ଷେତ୍ରରେ ଅନୁରାଗ ତଥା ନିଷ୍ଠା ମୋତେ ବହୁ ପରିମାଣରେ ପ୍ରଭାବିତ କଲା। ମୁଁ ତାଙ୍କୁ ବଡ଼ଭାଇ ତୁଲ୍ୟ ମନେକଲି ଏବଂ ତାଙ୍କ ପ୍ରତି ମୋର ଏକ ସ୍ୱତନ୍ତ୍ର ସମ୍ମାନବୋଧ ଜାଗ୍ରତ ହେଲା।

ନବୀନବାବୁ ଥିଲେ ଜ୍ଞାନ ତପସ୍ୱୀ ଏବଂ ଅତ୍ୟନ୍ତ ଛାତ୍ରବତ୍ସଳ। ଛାତ୍ରକୁ ଜ୍ଞାନ ଦାନରେ କୁଣ୍ଠା ନଥିଲା। ଏହି ସମୟରେ ଉଦ୍ଧବଭାଇ 'ମହିମା ଆଲୋକ' ନାମରେ ଏକ ପତ୍ରିକା ମଧ୍ୟ ପ୍ରକାଶ କରୁଥିଲେ। ସେ ଥିଲେ ମହିମାଧର୍ମର ପରମ ଭକ୍ତ ଏବଂ ଗବେଷଣା ତାଙ୍କର ବୃତ୍ତି ନଥିଲା; ଥିଲା ପ୍ରବୃତ୍ତି। ମୁଁ ଏ କ୍ଷେତ୍ରରେ ତାଙ୍କଠାରୁ ଅନେକ କିଛି ଶିଖିଛି।

ସୋନପୁର ନିକଟସ୍ଥ ଖଲିଆପାଲି ଗ୍ରାମ ମହିମା ଧର୍ମର ଆଦିକବି ଭୀମଭୋଇଙ୍କ ସାଧନା, ସିଦ୍ଧି ଏବଂ ସମାଧି ପୀଠକୁ ଧାରଣ କରି ମହିମାନ୍ୱିତ ହୋଇଯାଇଛି। ଖଲିଆପାଲି ମୋର ଜନ୍ମ ତଥା ବାସସ୍ଥାନ। ମେଣ୍ଡାଠାରୁ ଅନତି ଦୂରରେ ଅବସ୍ଥିତ। ଏଣୁ ଉଦ୍ଧବଭାଇଙ୍କ ଏତାଦୃଶ ଗବେଷଣା ମୋ ପାଇଁ ଅତ୍ୟନ୍ତ ଗୁରୁତ୍ୱପୂର୍ଣ୍ଣ ଥିଲା। ସେ 'ମହିମା ଧର୍ମ' ସମ୍ବନ୍ଧରେ ଗବେଷଣା କରି ଡକ୍ଟରେଟ୍ ପାଇଲେ। ପତ୍ର ପତ୍ରିକାରେ ମହିମା ଧର୍ମ ଏବଂ ଭୀମଭୋଇଙ୍କ ସମ୍ବନ୍ଧରେ ଅନେକ ମୌଳିକ ତଥା ଉପାଦେୟ ପ୍ରବନ୍ଧ ପ୍ରକାଶ କରୁଥିଲେ।

ଉଲ୍ଲେଖଯୋଗ୍ୟ ଯେ ସେ ପିଲାଙ୍କ ପାଇଁ ଭୀମଭୋଇ ପୁସ୍ତକ ରଚନା କରିଛନ୍ତି। ଯାହାକି ଭାରତ ଜ୍ଞାନ ବିଜ୍ଞାନ ସମିତି ଦ୍ୱାରା ପ୍ରକାଶିତ। ପୁନଶ୍ଚ ଶ୍ରମ ସ୍ୱୀକାର କରି ସେ 'ସନ୍ଥକବି ଭୀମଭୋଇ'ଙ୍କ ଗ୍ରନ୍ଥାବଳୀ ପ୍ରସ୍ତୁତ କରିଛନ୍ତି। ଏହାକୁ ଓଡ଼ିଶାର ଖ୍ୟାତନାମା ପ୍ରକାଶକ ଗ୍ରନ୍ଥମନ୍ଦିର ମଧ୍ୟ ଯଥାଯଥ ଭାବରେ ପ୍ରକାଶ କରି ଧନ୍ୟର୍ବାଦାହ।

୧୯୯୯ ମସିହାରେ ତତ୍କାଳୀନ ସୋନପୁର ଜିଲ୍ଲାପାଳ ଶ୍ରୀଯୁକ୍ତ ବିଷ୍ଣୁପଦ ସେଠି, ଆଇ.ଏ.ଏସ୍.ଙ୍କ ନେତୃତ୍ୱରେ ଏକ ପ୍ରକାର ପରିତ୍ୟକ୍ତ ହୋଇ ପଡ଼ିରହିଥିବା ସନ୍ଥକବି ଭୀମଭୋଇଙ୍କ ଖଲିଆପାଲି ପୀଠର ସର୍ବାଙ୍ଗୀନ ବିକାଶ ପାଇଁ ଉନ୍ନୟନ କାର୍ଯ୍ୟ ବିଜୁଳି ବେଗରେ ଚାଲିଲା। ଏହି କ୍ରମରେ **'ଭୀମଭୋଇ ସମ୍ମାନ'**ର ମଧ୍ୟ ପ୍ରବର୍ତ୍ତନ କରାଗଲା। ଭୀମଭୋଇ ସାହିତ୍ୟ-ଦର୍ଶନର ଗବେଷଣା ତଥା ପ୍ରଚାର ପ୍ରସାର କ୍ଷେତ୍ରରେ ଉଦ୍ଧବବାବୁଙ୍କ ଉଲ୍ଲେଖନୀୟ ଅବଦାନକୁ ସମ୍ମାନ ଜଣାଇ ତାଙ୍କୁ ପବିତ୍ର ମାଘମେଳା ଅବସରରେ 'ଭୀମଭୋଇ ସମ୍ମାନ'ରେ ଏକ ଆଧ୍ୟାତ୍ମିକ ପରିବେଶରେ ସମ୍ବର୍ଦ୍ଧିତ କରିବାର ସୁଯୋଗ ପାଇ ଆମେ ଗୌରବାନ୍ୱିତ।

ହଁ, ଆଉ ଗୋଟିଏ କଥା। ଭୁବନେଶ୍ୱରସ୍ଥିତ କଳାରାହାଙ୍ଗଠାରେ ଏକ ମହିମା ଆଶ୍ରମ ରହିଛି। ବାବା ରମେଶ ଦାସ ଏବଂ ଶ୍ରୀଯୁକ୍ତ ବିଷ୍ଣୁପଦ ସେଠି, ଆଇ.ଏ.ଏସ୍.ଙ୍କ ନେତୃତ୍ୱରେ ତା'ର ବିକାଶ କରାଯାଇ ଏହି ପୀଠରେ ସନ୍ଥକବି ଭୀମଭୋଇଙ୍କ ପୂର୍ଣ୍ଣାଙ୍ଗ ମାର୍ବଲ ପ୍ରତିମୂର୍ତ୍ତି ପ୍ରତିଷ୍ଠିତ। ଏହା ହିଁ ଭୁବନେଶ୍ୱରରେ ସନ୍ଥକବିଙ୍କ ଏକମାତ୍ର ପ୍ରତିମୂର୍ତ୍ତି।

ଏହି ପୀଠର ବାର୍ଷିକୋତ୍ସବ ଅବସରରେ ଉଦ୍ଧବବାବୁଙ୍କୁ 'ମହିମା ଗୌରବ' ଉପାଧିରେ ବିଭୂଷିତ କରାଗଲା । ତାଙ୍କର ଦୀର୍ଘଜୀବନ ତଥା ସର୍ବବିଧ ମଙ୍ଗଳ ସକାଶେ ଗୁରୁବ୍ରହ୍ମ ଅଲେଖ ମହିମାଙ୍କଠାରେ ସମସ୍ୱରରେ ପ୍ରାର୍ଥନା କରାଯାଇଥିଲା । ତାଙ୍କର ସାଧନା ଓ ସିଦ୍ଧିକୁ ମୋର ପ୍ରଣାମ ।

ଉଦ୍ଧବଭାଇ ଜଣେ ଅତ୍ୟନ୍ତ ସ୍ନେହୀ ତଥା ଅମାୟିକ ବ୍ୟକ୍ତି । ଜଣେ ବ୍ୟକ୍ତିଠାରେ ଜ୍ଞାନ ସହ ଏହିସବୁ ଗୁଣ ଥିଲେ ତାଙ୍କର ମର୍ଯ୍ୟାଦା ବହୁ ପରିମାଣରେ ବୃଦ୍ଧି ପାଇଥାଏ । ସେ ବଡ଼ଭାଇ ହିସାବରେ ଆମର ମାର୍ଗଦର୍ଶକ ତଥା ପ୍ରେରଣାର ଉତ୍ସ ।

ଗୁରୁବ୍ରହ୍ମ ଅଲେଖ ମହିମାଙ୍କଠାରେ ତାଙ୍କର ଦୀର୍ଘ ନିରାମୟ ଜୀବନର ପ୍ରାର୍ଥନା କରୁଛି । ସେ ମହିମାଧର୍ମର ପରମ ଭକ୍ତ ହୋଇ ରହିଥାନ୍ତୁ ।

ପୋ: ମେଣ୍ଡା
ଜି.ସୁବର୍ଣ୍ଣପୁର-୭୬୭୦୧୬
ମୋ: ୯୯୩୮୮୬୩୯୯୬




୨୦୧୦ ମହିମା ମେଳା ଅବସରରେ ସୋନପୁର ଜିଲ୍ଲାର ଖଲିଆପାଲିଠାରେ ମାନ୍ୟବର ସାଂସଦ ଶ୍ରୀ କଳିକେଶ ନାରାୟଣ ସିଂହଦେଓଙ୍କଠାରୁ ଭୀମଭୋଇ ସମାଧି ପୀଠ ଟ୍ରଷ୍ଟ ପ୍ରଦତ୍ତ **'ଭୀମଭୋଇ ସମ୍ମାନ'** ଗ୍ରହଣ



# ମହିମା ଧର୍ମର ଗବେଷକ ଡକ୍ଟର ଉଦ୍ଧବ ଚରଣ ନାୟକ

**ଆଜି ୭୦ ବର୍ଷ ସୀମା ଅତିକ୍ରମ କରିଥିଲେ ବି ମହିମା ସାହିତ୍ୟ ସୃଷ୍ଟିରେ ମହାଶୟଙ୍କର କଲମ ମନ୍ଥର ହୋଇନାହିଁ । ମହିମାଧର୍ମର ଜଣେ ସୁଲେଖକ ତଥା ମହିମାମାଟିର କୃତି ସନ୍ତାନ ଭାବେ ଡକ୍ଟର ନାୟକଙ୍କ ଯଶ ପରିକୀର୍ତ୍ତିତ ।**

ପ୍ରାଧ୍ୟାପକ ଶଙ୍କର୍ଷଣ ଜେନା

(ବ୍ୟାସକବି, ମହିମା ଗୌରବ, ମହିମା ସାହିତ୍ୟ ଓ ଶ୍ରୀଧର ସ୍ୱାମୀ ସାରସ୍ୱତ ସମ୍ମାନ ପ୍ରାପ୍ତ)

ମହିମା ଧର୍ମ ଓଡ଼ିଶାର ନିଜସ୍ୱ ଧର୍ମ । ସତ୍ୟ ସନାତନ ଧର୍ମର ଏକ ଅପ୍ରତିହତ ଧାରା ତଥା ବିଶୁଦ୍ଧ ସଂସ୍କରଣ ରୂପେ ଊନବିଂଶ ଶତାବ୍ଦୀରେ ଏହାର ପୁନଃ ଆତ୍ମପ୍ରକାଶ ଓଡ଼ିଶାର ଆଧ୍ୟାତ୍ମିକ ଇତିହାସରେ ଏକ ନବଯୁଗର ସୂତ୍ରପାତ କରିଥିଲା । ଏହା ବିଶ୍ୱର ଆଦ୍ୟଧର୍ମ ।

ମହିମା ଧର୍ମର ପ୍ରାଣ ପ୍ରତିଷ୍ଠାତା ବିଶ୍ୱପୂଜ୍ୟ ମହିମା ସ୍ୱାମୀ । ମହିମା ଧର୍ମ ସାମ୍ୟବାଦୀ ଚେତନାର ଦ୍ୟୋତକ । ଜାତି-ଧର୍ମ-ବର୍ଣ୍ଣ-ପଦପଦବୀ ପ୍ରତିଷ୍ଠା ନିର୍ବିଶେଷରେ ଈଶ୍ୱରଙ୍କ ଦ୍ୱାର ସମସ୍ତଙ୍କ ପାଇଁ ଉନ୍ମୁକ୍ତ । ଜାତିଭେଦର ନିର୍ମମ ପ୍ରାଚୀରକୁ ଭଗ୍ନ କରି ମହିମା ଧର୍ମ ଉଦ୍‌ଘୋଷଣ କରେ, "ଜାତି ଖୋଜିଲେ ମୁକ୍ତି ନାହିଁ- ମୁକ୍ତି ଖୋଜିଲେ ଜାତି ନାହିଁ ।" ସନ୍ଥକବି ଭୀମଭୋଇ ଉଦାତ୍ତ କଣ୍ଠରେ ଗାଇଛନ୍ତି- "ଜଗତ ଉଗତ ଜନ, ଆସ ଲୋଡ଼ିବା ପ୍ରଭୁଙ୍କୁ ।" ମହିମା ସ୍ୱାମୀଙ୍କ ସଂସ୍କାରବାଦୀ ଚିନ୍ତାଧାରା ସମାଜର ପ୍ରତିଟି ବର୍ଗର ଲୋକମାନଙ୍କୁ ପ୍ରଭାବିତ କରିଥିଲା ।

ସନ୍ଥକବି ଭୀମଭୋଇ, ଭକ୍ତ ନାରଣ, ଭକ୍ତ ଜୟକୃଷ୍ଣ, ସିଦ୍ଧ କାଲୁବାବା, ଭକ୍ତ ଶ୍ୟାମଘନ, ବ୍ରହ୍ମଲୀନ ବିଶ୍ୱନାଥ ବାବା, ବ୍ରହ୍ମଲୀନ ମହୀନ୍ଦ୍ର ବାବା, ବ୍ରହ୍ମଲୀନ କ୍ଷେତ୍ରବାସୀ ବାବା, ବ୍ରହ୍ମଲୀନ ବୈଷ୍ଣବ ଚରଣ ବାବା, ବ୍ରହ୍ମଲୀନ ଅନନ୍ତରାମ ବାବା, ଅବଧୂତ ମନ୍ଦର ଧର ବାବା, ଅବଧୂତ କପିଳେନ୍ଦ୍ର ବାବା ପ୍ରମୁଖ ମହିମା ସାହିତ୍ୟ ସୃଷ୍ଟି କରି ଏହି

ଧର୍ମର ମହିମାକୁ ପ୍ରଖ୍ୟାପିତ କରିଛନ୍ତି।

ମହିମାଧର୍ମର ଜଣେ ଲବ୍ଧପ୍ରତିଷ୍ଠ ଗବେଷକ ଡକ୍ଟର ଉଦ୍ଧବ ଚରଣ ନାୟକ ଗତ ଚାରି ଦଶନ୍ଧି ଧରି ମହିମାଧର୍ମ ସମ୍ପର୍କରେ ଉପାଦେୟ ପୁସ୍ତକମାନ ରଚନା କରି ଧର୍ମ ପ୍ରତି ଭକ୍ତ ତଥା ଜିଜ୍ଞାସୁ ପାଠକମାନଙ୍କର ଦୃଷ୍ଟି ଆକର୍ଷଣ କରି ଆସିଛନ୍ତି। ମହାଶୟ ମହିମାଧର୍ମର ମୁଖ୍ୟ ପୀଠସ୍ଥଳୀ ମହିମାଗାଦିରେ ୧୯୪୬ ମସିହା ଜୁନ୍ ୧୭ ତାରିଖ ଦିନ ଭୂମିଷ୍ଠ ଗ୍ରହଣ କରିଥିଲେ ଏକ ସଂସ୍କୃତି ସମ୍ପନ୍ନ ପରିବାରରେ। ତାଙ୍କର ପିତା ସ୍ୱର୍ଗତ ଅନନ୍ତ ଚରଣ ନାୟକ ମହିମାଧର୍ମ ଓ ଧାମର ଜଣେ ସମର୍ପିତ ପୃଷ୍ଠପୋଷକ ଭାବେ ପ୍ରତିଷ୍ଠା ଅର୍ଜନ କରିଥିଲେ। ଧର୍ମପୀଠ ମହିମାଗାଦିର ସ୍ପର୍ଶ ଲାଭ କରିବା ସହ ପିତାଙ୍କର ଆଦର୍ଶରେ ଅନୁପ୍ରାଣିତ ହୋଇ ଡକ୍ଟର ନାୟକ ମହିମାଧର୍ମ ସମ୍ପର୍କରେ ଗବେଷଣା ଆରମ୍ଭ କରିଥିଲେ। ମହିମାଧର୍ମ ବିଶ୍ୱ ଇତିହାସ, ମହିମାଧର୍ମ ଓ ସନ୍ନ୍ୟାସୀ ମହାନ୍ଦ୍ର ବାବା, ସିଦ୍ଧ ମହାପୁରୁଷ ଶ୍ରୀ ଶ୍ରୀ ବଡ଼ କୃପାସିନ୍ଧୁ ବାବା, ସିଦ୍ଧଚନ୍ଦ୍ରିକା (ସମ୍ପାଦନା), An Introduction to Mahima Religion ପ୍ରଭୃତି ପୁସ୍ତକମାନ ରଚନା କରି ମହାଶୟ ମହିମାଧର୍ମର ଇତିହାସ ଓ ସାରମର୍ମକୁ ପ୍ରକାଶିତ କରିଛନ୍ତି। ଭୀମଭୋଇ ଗ୍ରନ୍ଥାବଳୀ ସମ୍ପାଦନା କରି ଡ. ନାୟକ ବିଶେଷ ପ୍ରଶଂସିତ ହୋଇପାରିଛନ୍ତି। ସରଳ ଭାଷାରେ ପୁସ୍ତକ ଗୁଡ଼ିକ ରଚନା କରି ଡ. ନାୟକ ମହିମା ସାହିତ୍ୟକୁ ଲୋକାଭିମୁଖୀ କରିବା ପାଇଁ ପ୍ରଯତ୍ନ କରିଛନ୍ତି। ଏଥିସହ ମହିମାଧର୍ମ ସମ୍ପର୍କରେ ଗବେଷଣା କରି ମହାଶୟ ପିଏଚ୍.ଡି. ଲାଭ କରିବା ଏକ ଉଲ୍ଲେଖନୀୟ ଘଟଣା। ଆଜି ୭୦ ବର୍ଷ ସୀମା ଅତିକ୍ରମ କରିଥିଲେ ବି ମହିମା ସାହିତ୍ୟ ସୃଷ୍ଟିରେ ମହାଶୟଙ୍କର କଲମ ମନ୍ଥର ହୋଇନାହିଁ। ମହିମାଧର୍ମର ଜଣେ ସୁଲେଖକ ତଥା ମହିମାମାଟିର କୃତି ସନ୍ତାନ ଭାବେ ଡକ୍ଟର ନାୟକଙ୍କ ଯଶ ପରିକୀର୍ତ୍ତିତ।

ଏହି ଅବସରରେ ଡକ୍ଟର ନାୟକଙ୍କୁ ଆନ୍ତରିକ ଅଭିନନ୍ଦନ ଓ ସାରସ୍ୱତ ଶୁଭେଚ୍ଛା ଜ୍ଞାପନ କରିବା ସଙ୍ଗେ ସଙ୍ଗେ ମହାଶୟଙ୍କର ଦୀର୍ଘ ଓ ନିରାମୟ ଜୀବନ ସକାଶେ ମହାମହିମ ଅଲେଖ ପ୍ରଭୁଙ୍କ ନିକଟରେ ବିନୀତ ପ୍ରାର୍ଥନା।

ପ୍ରାକ୍ତନ ଅଧକ୍ଷ, ମହିମା ମହାବିଦ୍ୟାଳୟ, ଯୋରନ୍ଦା,
ମହିମା ଗାଦି- ୭୫୯୦୧୪ (ଓଡ଼ିଶା)



ଦ୍ରୋଣଙ୍କ ମୁହଁରେ ସେ କହିଛନ୍ତି "ଧନ୍ୟ ଏକଲବ୍ୟ ! ତୁମେ ଖୁବ୍ ମହାନ୍। ଅଟଳ ଗୁରୁଭକ୍ତି ଓ ଗୁରୁ ଦକ୍ଷିଣା ଦେଇ ତୁମେ ନାଁ ରଖିଗଲ। ଚିରଦିନ ଅମର ହୋଇ ରହିଲ। ନିର୍ଦ୍ଦୟ, ନିଷ୍ଠୁର ଗୁରୁଙ୍କୁ ଦେଖାଇ ଦେଇଗଲ, କେବଳ ବଡ଼ ଜାତିରେ ଜନ୍ମ ହୋଇଥିବା ଲୋକଙ୍କ ପାଖରେ ସଭ୍ୟତା ଓ ମାନବିକତା ନଥାଏ।

# ଶିଶୁ-କିଶୋର ଜୀବନୀ ସାହିତ୍ୟର ଯଶସ୍ୱୀ ସ୍ରଷ୍ଟା

ଡକ୍ଟର ଗୋବିନ୍ଦ ଚନ୍ଦ୍ର ଚାନ୍ଦ

ଓଡ଼ିଆ ସାହିତ୍ୟର ଜୀବନୀ, ଧର୍ମସାହିତ୍ୟ, ଅନୁବାଦ ଓ ଗବେଷଣା କ୍ଷେତ୍ରରେ ନିଜକୁ ପ୍ରତିପାଦିତ କରିଥିବା ସ୍ରଷ୍ଟା ଡକ୍ଟର ଉଦ୍ଧବ ଚରଣ ନାୟକ(୧୭.୬.୧୯୪୬) ସୃଷ୍ଟି-ସାମ୍ରାଜ୍ୟକୁ ବିଶ୍ଳେଷଣ କଲେ ଶିଶୁ-କିଶୋର ଜୀବନୀ ସାହିତ୍ୟ କ୍ଷେତ୍ରରେ ତାଙ୍କର ସ୍ୱାକ୍ଷର, ତାଙ୍କୁ ସ୍ୱତନ୍ତ୍ର ଆସନ ପ୍ରଦାନ କରେ। ମହିମାଧର୍ମ ଓ ଏହି ଧର୍ମ ଆଧାରିତ ସାହିତ୍ୟ ସଂପର୍କରେ ଗବେଷଣା କରି ଉତ୍କଳ ବିଶ୍ୱବିଦ୍ୟାଳୟରୁ ଡକ୍ଟରେଟ୍ ଡିଗ୍ରୀ ହାସଲ କରିଥିବା ଏହି ସ୍ରଷ୍ଟାଙ୍କ 'ମହିମାଧର୍ମ ବିଶ୍ୱ ଇତିହାସ', 'ଜ୍ଞାନ ଓ ଚେତନା', 'ଭାରତୀୟ ହିନ୍ଦୁନାରୀର କର୍ତ୍ତବ୍ୟ ଓ ଆଦର୍ଶ', 'ମହିମାଧର୍ମ ଓ ସନ୍ନ୍ୟାସୀ ମହୀନ୍ଦ୍ର ବାବା', 'ସିଦ୍ଧବଡ଼ କୃପାସିନ୍ଧୁ ବାବା, ମହିମାଧର୍ମ ଓ ବିଶ୍ୱକବି ଭୀମଭୋଇ' ଆଦି ପୁସ୍ତକ ଧର୍ମ ଆଧାରିତ ତଥା ଧର୍ମୀୟ ଦର୍ଶନ ଓ ଧର୍ମ ସାହିତ୍ୟ ସଂପର୍କରେ ଗବେଷଣାର ଫଳଶ୍ରୁତି। ମହିମା ଧର୍ମର ବିଜୟ ବୈଜୟନ୍ତୀ ଉଡ଼ାଇଥିବା ମହିମାଗାଦିରୁ ସେ ଲାଭ କରିଛି ସାରସ୍ୱତ ସାଧନା ପାଇଁ ପ୍ରାଣପ୍ରାଚୁର୍ଯ୍ୟ। ବ୍ରତୀ ହୋଇଛନ୍ତି ମହିମାଧର୍ମର ମହତ୍ତ୍ୱ ଓ ବିଶେଷତ୍ୱକୁ ପ୍ରତିପାଦନ କରିବା ପାଇଁ। 'ଓଡ଼ିଆ ସାହିତ୍ୟ ସଂସ୍କୃତିକୁ ଢେଙ୍କାନାଳର ଦାନ ମହିମାଧର୍ମ' ପ୍ରବନ୍ଧରୁ ସେ ହୋଇଥିଲେ ସାହିତ୍ୟମନସ୍କ ଏବଂ ନିଜ ମାଟିର ମହନୀୟ ଅବଦାନ ସଂପର୍କରେ ଆଲୋକପାତ କରି ନିଜର ପରିଚୟଟି ସୃଷ୍ଟି ଅନେକ ଭିତରେ ଏକ ହେବାର ପ୍ରୟାସ କରିଛନ୍ତି, ଏବଂ ଅନେକାଂଶରେ ସଫଳ ହୋଇଛନ୍ତି।

ମାତ୍ର ସାଧନାର ଆବର୍ତ୍ତ ଭିତରେ ତାଙ୍କର ନିଷ୍ପାପର ଭୂମିକା ତାଙ୍କୁ ଭିନ୍ନ ଭିନ୍ନ ପରିଚୟ ପ୍ରଦାନ କରିଛନ୍ତି। ରୁଚି ଅନୁସାରୀ ବୃତ୍ତି ଭିତରେ ନିଜକୁ ପ୍ରତିଷ୍ଠା କରି ଶିକ୍ଷକଙ୍କର ପ୍ରଶିକ୍ଷକ ହେବା ତାଙ୍କୁ ଶିକ୍ଷକ ସୁଲଭ ଗୁଣଟି ଦେଇଥିଲା; ଯାହା ଫଳରେ ସେ ଶିଶୁ-ସାହିତ୍ୟ ପ୍ରତି ନିଜର ଆନ୍ତରିକତା ପ୍ରକଟ କରିଥିଲେ।

ସଂସ୍କୃତିସଂପନ୍ନ ପରିବାରେ ଡକ୍ଟର ନାୟକଙ୍କର ଜନ୍ମ। ପିତା ସ୍ୱାଧୀନତା ସଂଗ୍ରାମୀ ଅନନ୍ତ ଚରଣ ଓ ମାତା ସୁକୁମାରୀ ଦେବୀ। ପିଲାଟି ଦିନରୁ ସୋପାନ ପରେ ସୋପାନ ଚଢ଼ିବା ପାଇଁ କେତେ ନା କେତେ ଆହ୍ୱାନକୁ ମୁକାବିଲା କରିବାକୁ ପଡ଼ିଛି। ଜୀବନରେ ଆଗକୁ ବଢ଼ିବା ପାଇଁ, ଅନେକରେ ଏକ ହେବା ପାଇଁ ଅନେକ ବନ୍ଧୁର ପଥ ଅତିକ୍ରମ କରିବାକୁ ପଡ଼ିଛି। ଜୀବନରେ ମିଳିଥିବା ଅନୁଭବ ଓ ଅନ୍ୟ ବିଶିଷ୍ଟ ସ୍ରଷ୍ଟାଙ୍କୁ ଚିହ୍ନି ଚିହ୍ନାଇବାର ପ୍ରୟାସ ହୋଇଛି ତାଙ୍କ ସୃଷ୍ଟିର ମୂଳଭିତ୍ତି। 'ମଧୁବାବୁଙ୍କ ବୁଦ୍ଧି କଥା'(୧୯୯୩), 'ଗଡ଼ଜାତ ଗାନ୍ଧି ସାରଙ୍ଗଧର ଦାସ'(୧୯୯୩), 'ବିପ୍ଳବୀ ବାଘାଯତୀନ'(୧୯୯୩), 'ଇନ୍ଦିରା ପ୍ରିୟଦର୍ଶିନୀ'(୧୯୯୬), 'ଗୁରୁଶିଷ୍ୟ କଥାମାଳା', 'ପଠାଣି ସାମନ୍ତ'(୧୯୯୬), ଆଦି ପୁସ୍ତକରୁ ହିଁ ସ୍ପଷ୍ଟ ହୋଇଛି ଶିଶୁ-କିଶୋର ଜୀବନୀ ସାହିତ୍ୟକୁ କି ଅବଦାନ ପ୍ରଦାନ କରିଛନ୍ତି ଡକ୍ଟର ନାୟକ। ଅବଶ୍ୟ 'ଅଦୃଶ୍ୟ ରାକ୍ଷସ'(୧୯୯୩), 'ମଜା ଓ ଆନନ୍ଦ କାହାଣୀମାଳା'(୧୯୯୭) ଆଦି ମୌଳିକ ଲେଖା ଭିତରେ ଅତୀତ ପ୍ରତି ସମ୍ମୋହନକୁ ମଧ୍ୟ ଲକ୍ଷ୍ୟ କରାଯାଏ।

ଶିଶୁ-କିଶୋର ମନରେ ଏ ମାଟିର ମହାନ ଗାଥା, ମହତ ଜୀବନର ଉଲ୍ଲେଖନୀୟ ଦିଗ, ସମୃଦ୍ଧ ଅତୀତ ଓ ଇତିହାସ ସଂପର୍କରେ ସବିଶେଷ ତଥ୍ୟ ଦେଇ ଉତ୍ତରପିଢ଼ିକୁ ମାଟି ଓ ଜାତି ମନସ୍କ କରିବା ପରି ଏକ ଗୁରୁଦାୟିତ୍ୱ ସେ କାନ୍ଧରେ ବହନ କରିଆସିଛନ୍ତି ଦଶନ୍ଧି ଦଶନ୍ଧି ଧରି। 'ମହାଭାରତର ନୀତିକଥା' ହେଉ ବା 'ଆଲିବାବା କଥା' ହେଉ; ଶିଶୁର ଜିଜ୍ଞାସୁ ମନରେ ଜାଣିବାର ଇଚ୍ଛାର ପରିପୂର୍ତ୍ତି ସହ କାହାଣୀର ମନୋରଂଜନଧର୍ମୀ ଗୁଣ ମଧ୍ୟ ଦେଇ ଆନନ୍ଦ ଭରିଦେବାର ଦୁଇଟି ଲକ୍ଷ୍ୟ ପୂରଣ କରିବା ଦିଗରେ ସ୍ରଷ୍ଟା ସଫଳ ହୋଇଛନ୍ତି। ମୌଳିକ ଗଳ୍ପ ଭିତରେ ଶିଶୁ-କିଶୋରଙ୍କ ସର୍ଜନଶୀଳ ସତ୍ତାର ବିକାଶ ମଧ୍ୟ ତାଙ୍କର ଲକ୍ଷ୍ୟ ହୋଇଛି। ଏ ଦିଗରେ ତାଙ୍କର ନିରନ୍ତର ଉଦ୍ୟମ ତାଙ୍କୁ ଶିଶୁ-କିଶୋର ଉପଯୋଗୀ ସାହିତ୍ୟର ସ୍ରଷ୍ଟା ଭାବେ ପରିଚୟ ଦେଇଛି। 'ମଜା ଓ ଆନନ୍ଦ କାହାଣୀମାଳା'ରେ ଡକ୍ଟର ନାୟକ ଆମ କାହାଣୀ ଆରମ୍ଭରୁ କୁହାଯାଉଥିବା କଥାଣୀ ଦେଇଛନ୍ତି- "କଥାଟିଏ କହୁଁ କଥାଟିଏ କହୁଁ, କିସ କଥା ?" କଥା ଶେଷରେ "ମୋ କଥାଟି ସରିଲା, ଫୁଲଗଛଟି ମରିଲା।"ର ଉଲ୍ଲେଖ କରି ଆମ କାହାଣୀର

ପରମ୍ପରା ସହ ଆଜିର ପାଠକ ଓ ଶିଶୁ-କିଶୋରଙ୍କୁ ଅବଗତ କରିଛନ୍ତି । ଏଥିରେ 'ଦୁଇ ଭାଇ', 'ଗରିବ ବ୍ରାହ୍ମଣ ଧନୀ ହେଲେ', 'ସୁନାବୋହୂ' ଆଦି ଶୀର୍ଷକରେ ପାଞ୍ଚଟି ବିଷୟ ରହିଛି । ମଜା କଥା କହି ଆନନ୍ଦ ଦେବା ହୋଇଛି ଲେଖକଙ୍କର ଲକ୍ଷ୍ୟ । 'ଅଦୃଶ୍ୟ ରାକ୍ଷସ' ଗଳ୍ପ ସଂକଳରେ ସ୍ଥାନିତ ଗଳ୍ପଗୁଡ଼ିକରେ ପରିବେଶ ସଚେତନତାର ସ୍ୱର ବେଶ୍ ସ୍ପଷ୍ଟ । ପିଲାଟି ମନରେ ପରିବେଶ ପ୍ରତି ମମତ୍ୱବୋଧ ସୃଷ୍ଟି କରିବାର ପ୍ରୟାସ କରିଛନ୍ତି ସ୍ରଷ୍ଟା । ଶିଶୁ-କିଶୋର ସାହିତ୍ୟର ଜୀବନୀ ବିଭାଗକୁ ସମୃଦ୍ଧ କରିବା ଡକ୍ଟର ନାୟକଙ୍କ ଅବଦାନ ବିଶେଷ ଉଲ୍ଲେଖଯୋଗ୍ୟ । ଏ କ୍ଷେତ୍ରରେ ସେ ଅଧିକ ସଫଳ ବୋଲି ସ୍ୱୀକାର କରିବାକୁ ପଡ଼ିବ ।

'ମଧୁବାବୁଙ୍କ ବୁଦ୍ଧିକଥା' ପୁସ୍ତକରେ ମଧୁବାବୁଙ୍କ ଜୀବନର ତେରଟି ଘଟଣାକୁ ଗଳ୍ପ ଭାବେ ଉପସ୍ଥାପିତ କରାଯାଇଛି, ଯେଉଁଥିରେ ଡକ୍ଟର ନାୟକଙ୍କୁ ଜଣେ କାହାଣୀକାର ଭାବେ ପ୍ରତ୍ୟକ୍ଷ କରିହୁଏ । ଓଡ଼ିଆର ମହାନାୟକ ମଧୁସୂଦନ ଦାସଙ୍କ ଜୀବନର ପ୍ରଭାବଶାଳୀ ଘଟଣାଙ୍କୁ ପିଲାମାନଙ୍କ ନିକଟରେ କାହାଣୀର ପୋଷାକ ପିନ୍ଧାଇ ଉପସ୍ଥାପନ କରି ସେମାନଙ୍କ ହୃଦୟରେ  ଗଭୀର ରେଖାଟିଏ ଟାଣିବାର ଯେଉଁ ଉଦ୍ୟମ କରାଯାଇଛି, ତାହାକୁ ଡକ୍ଟର ନାୟକଙ୍କ ଜାତୀୟ କର୍ତ୍ତବ୍ୟ ବୋଲି ଉଲ୍ଲେଖ କଲେ ଅତିଶୟୋକ୍ତି ହେବ ନାହିଁ । ଏହି ପୁସ୍ତକରେ ମଧୁବାବୁଙ୍କ ପ୍ରତି ଅନ୍ୟ ସ୍ରଷ୍ଟାମାନଙ୍କ ଶ୍ରଦ୍ଧାସୁମନର ଉଦ୍ଧୃତି କରାଯିବା ସହ ତାଙ୍କର ସଂକ୍ଷିପ୍ତ ଜୀବନୀ ପ୍ରଦାନ କରାଯାଇଛି, ଯେଉଁଥିରେ ତାଙ୍କୁ ଉତ୍କଳଗୌରବ ନୁହେଁ ବିଶ୍ୱଗୌରବ ରୂପେ ଅବହିତ କରାଯାଇଛି । ଏପରି ବିଚାର ଉଦ୍ଧବ ଚରଣଙ୍କ ବିଚାର-ସାମର୍ଥ୍ୟକୁ ପରିପ୍ରକାଶ କରୁଛି ।

'ଗଡ଼ଜାତ ଗାନ୍ଧି ସାରଙ୍ଗଧର ଦାସ' ହେଉ ବା 'ବିପ୍ଳବୀ ବାଘାଯତୀନ' ବା 'ପଠାଣି ସାମନ୍ତ' ହେଉ ଏ ସମସ୍ତ ଜୀବନୀ ପୁସ୍ତକରେ ମହାନ୍ ବ୍ୟକ୍ତିତ୍ୱମାନଙ୍କ ଜୀବନୀ ତ ରହିଛି, ଏହା ସହ ଏହି ଜୀବନର ମହତ୍ୱକୁ ଦର୍ଶାଇବା ପାଇଁ ଜୀବନରେ ଘଟିଥିବା ଅନେକ ଘଟଣାକୁ ଗଳ୍ପଧର୍ମୀ ଶୈଳୀରେ ଉପସ୍ଥାପନ କରାଯାଇଛି । 'ଇନ୍ଦିରା ପ୍ରିୟଦର୍ଶିନୀ' ପୁସ୍ତକଟି ଇନ୍ଦିରା ଗାନ୍ଧୀଙ୍କ ଉପରେ ଲିଖିତ ଏକ ତଥ୍ୟନିଷ୍ଠ ପୁସ୍ତକ । ଅନ୍ୟ ପୁସ୍ତକ ଅପେକ୍ଷା ଏଥିରେ ଇତିହାସର ଅନେକ ଘଟଣାର ଅବତାରଣା କରାଯାଇଛି, ଯାହା ଇନ୍ଦିରାଙ୍କ ଜୀବନ ସହ ସଂପୃକ୍ତ । ଛୋଟ ଛୋଟ ବିଷୟରେ ଜୀବନର ଅନେକ ଦିଗକୁ ଉନ୍ମୋଚନ କରିଛନ୍ତି ସେ ।

'ଗୁରୁଶିଷ୍ୟ କଥାମାଳା'ରେ ଡକ୍ଟର ନାୟକ କଲାଣ୍ୟ ସ୍ୱାମୀ, ଆରୁଣି, ଉପମନ୍ୟୁ, ଉତଙ୍କ ଓ ଏକଲବ୍ୟଙ୍କ ଗୁରୁଭକ୍ତି ଓ ସଫଳ ଜୀବନର ଗାଥାକୁ ପ୍ରକାଶ କରିଛନ୍ତି ।

ସରଳ ସାବଲୀଳ ପ୍ରକାଶ ଭଙ୍ଗୀକୁ ନେଇ ଏହା ବେଶ୍ ପ୍ରଭାବଶାଳୀ ହୋଇଛି- " ଏ ହେଉଛି ମହାଭାରତର କଥା । ଦ୍ରୋଣ ଥିଲେ ପାଣ୍ଡବ ଆଉ କୌରବମାନଙ୍କ ଅସ୍ତ୍ରଗୁରୁ। ଯୁଦ୍ଧ ବିଦ୍ୟା ଶିଖେଇବାରେ ଦ୍ରୋଣଙ୍କର ଥିଲା ବଡ଼ ନାଁ। ତାଙ୍କ ନାଁ ଶୁଣି ଅନ୍ୟ ଦେଶର ରାଜକୁମାରମାନେ ତାଙ୍କ ପାଖକୁ ଆସୁଥିଲେ ଯୁଦ୍ଧ ବିଦ୍ୟା ଶିଖିବା ପାଇଁ। ସେତେବେଳେ ନିଷାଦ ଦେଶର ରାଜା ଥିଲେ ହିରଣ୍ୟଧନୁ। ତାଙ୍କର ଥିଲା ଗୋଟିଏ ବୋଲି ପୁଅ। ତାଙ୍କ ନାଁ ଏକଲବ୍ୟ।"(ଏକଲବ୍ୟଙ୍କ ଗୁରୁଦକ୍ଷିଣା) ଉତ୍ତର ପିଢ଼ି ନିକଟରେ ଆମ ପରମ୍ପରା ଓ ଜୀବନଚର୍ଚ୍ଚାକୁ ଉପସ୍ଥାପିତ କରିବା ତାଙ୍କ ସ୍ରଷ୍ଟା ଜୀବନକୁ ସାର୍ଥକ କରିଛି। ସୃଷ୍ଟିର ବାର୍ତ୍ତା ମାଧ୍ୟମରେ ଶିଶୁ-କିଶୋରଙ୍କ ଜୀବନକୁ ଉତ୍ତମ ମାର୍ଗରେ ନେବା ପାଇଁ ସ୍ରଷ୍ଟାଙ୍କ ପ୍ରୟାସ ମଧ୍ୟ ଉଲ୍ଲେଖଯୋଗ୍ୟ। ଦ୍ରୋଣଙ୍କ ମୁହଁରେ ସେ କହିଛନ୍ତି "ଧନ୍ୟ ଏକଲବ୍ୟ ! ତୁମେ ଖୁବ୍ ମହାନ୍। ଅଟଳ ଗୁରୁଭକ୍ତି ଓ ଗୁରୁ ଦକ୍ଷିଣା ଦେଇ ତୁମେ ନାଁ ରଖିଗଲ। ଚିରଦିନ ଅମର ହୋଇ ରହିଲ। ନିର୍ଦ୍ଦୟ, ନିଷ୍ଠୁର ଗୁରୁଙ୍କୁ ଦେଖାଇ ଦେଇଗଲ, କେବଳ ବଡ଼ ଜାତିରେ ଜନ୍ମ ହୋଇଥିବା ଲୋକଙ୍କ ପାଖରେ ସଭ୍ୟତା ଓ ମାନବିକତା ନଥାଏ। ସବୁ ଜାତିରେ ଜନ୍ମ ହୋଇଥିବା ଲୋକ ପାଖରେ ସଭ୍ୟତା ଓ ମାନବିକତା ପୂରି ରହିଛି। ସବୁ ମଣିଷ ସମାନ। ସମସ୍ତେ ଈଶ୍ୱରଙ୍କ ସନ୍ତାନ।"

ସନ୍ଥ ଭୀମଭୋଇଙ୍କ ସାହିତ୍ୟ ଓ ଦର୍ଶନ ସଂପର୍କରେ ଗବେଷଣା କରିଥିବା ଡକ୍ଟର ନାୟକ ମଧ୍ୟ 'ସନ୍ଥକବି ଭୀମଭୋଇ'(୨୦୦୮, ପରିମାର୍ଜିତ ସଂସ୍କରଣ ୨୦୧୫) ଜୀବନୀ ପୁସ୍ତକର ରଚୟିତା। 'ଜଟାସିଙ୍ଗା ଗାଁ ଆଦିବାସୀ ପରିବାର କଥା', 'ଅପୁତ୍ରିକର ପୁତ୍ର ଲାଭ', 'ଗାଈ ଜଗୁଆଳ ଭୀମଭୋଇ', 'ଭୀମଙ୍କର ଦିବ୍ୟଜ୍ଞାନ ଲାଭ ଓ ମହିମା ଧର୍ମରେ ଆଶ୍ରିତ' ଆଦି ଶୀର୍ଷକରେ ଭୀମଭୋଇଙ୍କ ଜୀବନସଂଗ୍ରାମ ଓ ସାଧନାକୁ ନେଇ ଏହି ପୁସ୍ତକଟି ଶିଶୁ-କିଶୋରଙ୍କ ପାଇଁ ସଂଗ୍ରହଣୀୟ ହୋଇପାରିଛି। ଏହି ପୁସ୍ତକର ଆରମ୍ଭରେ ଲେଖକ କହିଛନ୍ତି, 'ମହାତ୍ମା ଭୀମଭୋଇ ଓଡ଼ିଆ ଜାତିର ଗର୍ବ, ଗୌରବ ତଥା ଓଡ଼ିଆ ସାହିତ୍ୟ ଜଗତର ଏକ ଅମ୍ଳାନ ପ୍ରତିଭା। ସେ କେବଳ କବି ଓ ପଣ୍ଡିତ ଭାବରେ ସ୍ୱୀକୃତ ନୁହନ୍ତି, ଜଣେ ଅସାଧାରଣ ଧୀଶକ୍ତିସମ୍ପନ୍ନ ତତ୍ତ୍ୱଦର୍ଶୀ ମହାତ୍ମା ମହାପୁରୁଷ ଭାବରେ ଚିରପୂଜ୍ୟ।'ଭୀମଭୋଇଙ୍କୁ ଯେପରି ସେ ବିଚାର କରିଛନ୍ତି, ତାହାର ପରିପ୍ରକାଶ ଘଟିଛି ଏହି ପୁସ୍ତକରେ।

'ପିଲାଙ୍କ ସାଈ ଲୀଳା'(୨୦୧୪)ରେ ସାଈବାବାଙ୍କ ଆବିର୍ଭାବଠାରୁ ବାବାଙ୍କର ମହାସମାଧି ପର୍ଯ୍ୟନ୍ତ ବେଶ୍ ସଂକ୍ଷେପରେ ସାଈଙ୍କ ଜୀବନ ଆଲେଖ୍ୟ ଏଥିରେ ପ୍ରକାଶ ପାଇଛି। ସାଈବାବାଙ୍କ ମହନୀୟତାଠାରୁ ତାଙ୍କର ପର୍ବପର୍ବାଣୀ- ଜୀବନରେ ସେ ଗ୍ରହଣ କରିଥିବା ମଙ୍ଗଳକାମୀ ଭୂମିକାକୁ ଏଥିରେ ଡକ୍ଟର ଉଦ୍ଧବ ଚରଣ ନାୟକ ପ୍ରକାଶ

କରିଛନ୍ତି। ସାଈଙ୍କ ଲୀଳାକୁ ପିଲାମାନଙ୍କ ପାଇଁ ପରିବେଷଣ କରିବା ବେଳେ ଶିରିଡ଼ି ସଂପର୍କରେ, ସାଈଙ୍କ ସମାଜ କଲ୍ୟାଣ ବିଚାର ସଂପର୍କରେ ଉଲ୍ଲେଖ କରିଛନ୍ତି ଲେଖକ।

'ବୁଦ୍ଧ କାହାଣୀ'(୨୦୧୫)ରେ ଗୌତମ ବୁଦ୍ଧଙ୍କ ଏକ ଜୀବନୀ ନୁହେଁ, ଏହା ତାଙ୍କ ଜୀବନର କେତେକ ଶିକ୍ଷାପ୍ରଦ କାହାଣୀରେ ସମୃଦ୍ଧ ହୋଇଛି। ଏଥିରୁ ତାଙ୍କ ଜୀବନର ଅନେକ ଦିଗକୁ ଆବିଷ୍କାର କରିହୁଏ। 'ଜ୍ଞାନ ଓ ଚରିତ୍ର' ହେଉ ବା 'ସୁନାହଂସ', 'ଦୁଷ୍ଟ ହେଲା ଶିଷ୍ଟ' ହେଉ ବା 'ମୂଷା ବା ବିଲୁଆ', ସବୁଠି ବୁଦ୍ଧଦେବଙ୍କ ଜୀବନର ମହନୀୟ ଗୁଣ ହିଁ ପ୍ରକାଶିତ। ଜୀବନକୁ ଗଢ଼ିବା ଓ ଜୀବନ ପାଇଁ ବାର୍ତ୍ତାକୁ ନେଇ ଏହି ଗଳ୍ପଗୁଡ଼ିକ ପ୍ରଭାବଶାଳୀ। ଜୀବନ ଓ ଜଗତକୁ ଭିନ୍ନ ଭାବେ ଦେଖିଥିବା ମହାପୁରୁଷମାନଙ୍କ ଈଶ୍ୱରଙ୍କ ଉପଲବ୍ଧି ଓ ଜୀବନାନୁଭୂତି ମଧ୍ୟ ଏହି ଜୀବନୀରେ ପ୍ରକାଶ ପାଇଛି। ସ୍ଥାନେ ସ୍ଥାନେ ସଂଳାପର ସଂଯୋଜନା ବିଷୟକୁ ଅଧିକ ହୃଦ୍ୟ କରିପାରିଛି। ଅଳ୍ପରେ ଅନେକ କଥା କହିବାର ଅବକାଶକୁ ଡକ୍ଟର ନାୟକ ଯଥାଯଥ ଭାବେ ଉପଯୋଗ କରିଛନ୍ତି।

ଜୀବନରେ ସାରସ୍ୱତ ସାଧନାକୁ ବ୍ରତ ଭାବେ ଗ୍ରହଣ କରିଥିବା ଡକ୍ଟର ନାୟକ ଓଡ଼ିଶା ରାଜନୀତିର ଇତିହାସଠାରୁ ଧର୍ମୀୟ ପରମ୍ପରାର ଇତିହାସ ପର୍ଯ୍ୟନ୍ତ ଅନେକ ଦିଗନ୍ତକୁ ସ୍ପର୍ଶ କରିଛନ୍ତି। ମାତ୍ର ଶିଶୁ-ସାହିତ୍ୟ କ୍ଷେତ୍ରକୁ ତାଙ୍କ ଅବଦାନ ତାଙ୍କ ସଫଳତାର କାହାଣୀକୁ ପ୍ରତିପାଦିତ କରିଛି।



୨୦୧୩ ମସିହାରେ ଅନୁଷ୍ଠିତ ଶିଶୁ ସାହିତ୍ୟ ଲେଖକ ସମ୍ମେଳନ, ଓଡ଼ିଶାଙ୍କ ପ୍ରଦତ୍ତ 'ଜୟକୃଷ୍ଣ ସାହୁ ଶିଶୁ ସାହିତ୍ୟ ସମ୍ମାନ' ମୁଖ୍ୟ ଅତିଥି ମାନ୍ୟବର ରାଜ୍ୟସଭା ସାଂସଦ ଶ୍ରୀ ଶଶିଭୂଷଣ ବେହେରାଙ୍କଠାରୁ ଗ୍ରହଣ



ଅଲେଖଧର୍ମ ଓ ଦର୍ଶନ ଉପରେ ତାଙ୍କର ମୋଟ ଆଠଗୋଟି ବହି ପ୍ରକାଶିତ। 'ସନ୍ଥକବି ଭୀମଭୋଇ ଗ୍ରନ୍ଥାବଳୀ' ସମ୍ପାଦନା ଓ ସଂକଳନ ତାଙ୍କର ଏକ ବହୁ ଉଚ୍ଚକୋଟୀର କୃତି ଭାବରେ ଜଣାଶୁଣା।

# ଅଭିନନ୍ଦନ ସେଇ ବିରଳ ବ୍ୟକ୍ତିଙ୍କୁ

ଡକ୍ଟର ବାସନ୍ତୀ ମହାନ୍ତି

ଶିକ୍ଷା ସଂସ୍କୃତି ଓ ସାହିତ୍ୟିକ ପଟ୍ଟଭୂମିରେ ନିଜକୁ ପରିପୁଷ୍ଟ କରିଥିବା ବିରଳ ବ୍ୟକ୍ତିତ୍ୱଟିଏ ଡ. ଉଦ୍ଧବ ଚରଣ ନାୟକ। ଶୈଶବରୁ ନିଜକୁ ଭିନ୍ନ ରୂପରେ ଗଢ଼ିବାର ସ୍ୱପ୍ନ ଦେଖୁଥିବା ସେଇ ମଣିଷଟି ଆଜି ବୟସର ଅପରାହ୍ନରେ। ଜୀବନର ସତୁରିଟି ବର୍ଷା, ବସନ୍ତ ଓ ବୈଶାଖକୁ ଅବଲୀଳା କ୍ରମେ ଅତିକ୍ରମ କରି ଆସିଛନ୍ତି। ସବୁଠି ଛାଡ଼ି ଆସିଛନ୍ତି ସ୍ମୃତିର ସ୍ୱାକ୍ଷର। ପ୍ରତିଟି ଅନୁଭୂତିକୁ ସାଉଁଟି ସେଗୁଡ଼ିକୁ ସୃଜନ ସମ୍ଭାରରେ ସମୃଦ୍ଧ କରିଛନ୍ତି। ଓଡ଼ିଆ ସାରସ୍ୱତ ଗନ୍ତାଘର ପାଇଁ ତାଙ୍କର ଅବଦାନ ଅସ୍ୱୀକାର କରି ହେବନାହିଁ। ଡ. ନାୟକଙ୍କର ସତୁରୀ ବର୍ଷର ସଫଳ ଅଭିଯାତ୍ରା ଅବସରରେ ତାଙ୍କର ସୁସ୍ଥ, ନିରାମୟ ଓ ଦୀର୍ଘ ଜୀବନ କାମନା କରି ଉକ୍ତ ଆଲେଖଟି ଉପସ୍ଥାପନା କରୁଛି।

ଢେଙ୍କାନାଳ ଜିଲ୍ଲା ଅନ୍ତର୍ଗତ ମହିମାଧର୍ମର ସାଧନାପୀଠ ଯୋରନ୍ଦା ମହିମାଗାଦିର ନାଟିମା ବଜାର ଡ. ନାୟକଙ୍କର ଜନ୍ମଭୂମି। ୧୯୪୬ ମସିହା ଜୁନ୍ ମାସ ୧୭ ତାରିଖରେ ବସୁମତୀ ସ୍ନାନ ଦିନ ତାଙ୍କର ଜନ୍ମ। ପିତା ସ୍ୱାଧୀନତା ସଂଗ୍ରାମୀ ଅନନ୍ତ ଚରଣ ନାୟକ ଓ ମାତା ସୁକୁମାରୀ ନାୟକ। ଦେଶର ଅଧିକାଂଶ ସ୍ୱାଧୀନତା ସଂଗ୍ରାମୀ ପରିବାର ପରି ତାଙ୍କ ପରିବାରଟି ମଧ୍ୟ ଆର୍ଥିକ ଅନଟନର ଶିକାର ହୋଇଥିଲା। ଦେଶ ଓ ଜାତି ପାଇଁ ଅଧିକାଂଶ ସମୟ ଉତ୍ସର୍ଗ କରୁଥିବା ସ୍ୱର୍ଗତଃ ଅନନ୍ତ ଚରଣ ନାୟକ ନିଜ ପରିବାରର ଉପଯୁକ୍ତ ଦାୟିତ୍ୱ ନେଇପାରି ନଥିଲେ। ଏପରିକି ପୁତ୍ର କନ୍ୟାମାନଙ୍କର ଉଚ୍ଚଶିକ୍ଷା ପାଇଁ ତାଙ୍କ ପାଖରେ ସମ୍ବଳ ନ ଥିଲା। ସେହି ହେତୁ ବିଦ୍ୟାଳୟର ଆଗଧାଡ଼ିର ଛାତ୍ର

ହୋଇ ସୁଦ୍ଧା ଶ୍ରୀଯୁକ୍ତ ନାୟକ ମାଟ୍ରିକ୍ ପରେ ଉଚ୍ଚଶିକ୍ଷା ପାଇଁ ସହରକୁ ଯାଇପାରିଲେ ନାହିଁ। ସ୍କୁଲରେ ସେ କେବଳ ପାଠପଢ଼ାରେ ଆଗୁଆ ନଥିଲେ ପ୍ରବନ୍ଧ ପ୍ରତିଯୋଗିତା, ତର୍କ ପ୍ରତିଯୋଗିତା ଆଦିରେ ପ୍ରଥମ ସ୍ଥାନ ଅଧିକାର କରୁଥିଲେ। ବହୁ ବିଶିଷ୍ଟ ବ୍ୟକ୍ତିତ୍ୱ ମାନଙ୍କଠାରୁ ପୁରସ୍କାର ଗ୍ରହଣ କରୁଥିଲେ। ତଥାପି ତାଙ୍କର ସାଙ୍ଗମାନେ ସହରକୁ ଉଚ୍ଚଶିକ୍ଷା ଗଲାବେଳେ ସେହି ଅପରିପକ୍ୱ ବୟସରେ ପରିବାରକୁ ଆର୍ଥିକ ସହାୟତା ପାଇଁ ମ୍ୟୁନିସିପାଲିଟି ଅଫିସରେ କାର୍ଯ୍ୟରେ ଯୋଗ ଦେଇଥିଲେ। କିନ୍ତୁ ପାଠ ପଢ଼ିବାର ଅଦମ୍ୟ ଇଚ୍ଛା ଓ ତାଙ୍କର ଉଚ୍ଚାଭିଳାଷ ତାଙ୍କୁ ବେଶିଦିନ ଏ ସଙ୍କୁଚିତ ପରିସରରେ ଆବଦ୍ଧ କରିପାରିଲା ନାହିଁ। ଢେଙ୍କାନାଳର ପ୍ରାତଃ ମହାବିଦ୍ୟାଳୟରେ ଭର୍ତ୍ତି ହୋଇ ଅଧ୍ୟୟନ ଜାରି ରଖିବାକୁ ଚାହିଁଲେ। ଚାକିରି ଓ ଶିକ୍ଷା, ଏକାବେଳକେ ଏତେ ପରିଶ୍ରମ। ଦେହ ସହିଲା ନାହିଁ। ଅସୁସ୍ଥ ହୋଇପଡ଼ିଲେ। ଶେଷରେ କଟକ ଚାଲିଆସିଲେ।

ସ୍ୱକିୟ ପ୍ରତିଭା ବଳରେ ଜନମାନସରେ ଶ୍ରଦ୍ଧାଶୀଳ ହେବା ଯାହାର ନିୟତି, ସେ ଲୋକଲୋଚନ ଅଗୋଚରରେ ରହିବ କେମିତି ? ଯେତେ ପ୍ରତିବନ୍ଧକ ଆସିଲେ ବି ନିଶ୍ଚୟ ଦିନେ ନା ଦିନେ ସେ ନିଜକୁ ପ୍ରସ୍ଫୁଟିତ କରିବ। ତା' ପାଇଁ ସେହିଭଳି ଅନୁକୂଳ ପରିସ୍ଥିତି ପରିସ୍ଥିତି ଆପେ ଆପେ ଖଞ୍ଜି ହୋଇଯାଏ। ସ୍ନାତକୋତ୍ତର ପରେ ସେ ମହିମା ଧର୍ମର ଇତିହାସ ଓ ସାହିତ୍ୟ ଉପରେ ଗବେଷଣା କରି ଡକ୍ଟରେଟ୍ ଉପାଧିପ୍ରାପ୍ତ ହେଲେ। ଶ୍ରୀଯୁକ୍ତ ନାୟକ ତାଙ୍କର ଲେଖାଲେଖି ସମ୍ପର୍କରେ କୁହନ୍ତି– "କଟକ ରେଭେନ୍ସା ସାନ୍ଧ୍ୟ କଲେଜରେ ନାଁ ଲେଖାଇ ସହରରେ ପାଦ ଦେଇଥାଏ। ଗୋଟିଏ ମେସ୍‌ରେ ରହୁଥାଏ। ମୋ ସାଙ୍ଗମାନେ 'ଢେଙ୍କାନାଳିଆ' ବୋଲି କହି ଥଟ୍ଟା କରୁଥିଲେ। ମୋତେ ଅସହ୍ୟ ବୋଧ ହେଲେ ବି ନିରବ ରହୁଥିଲି। ଦିନେ ମୋ କଲମ ମୁନରେ ଏହାର ପ୍ରତିବାଦ କଲି। ଲେଖାଟିଏ ଲେଖିଲି, 'ଓଡ଼ିଆ ସାହିତ୍ୟ ସଂସ୍କୃତିକୁ ଢେଙ୍କାନାଳର ଦାନ ମହିମା ଧର୍ମ' ତାକୁ ନେଇ ସମାଜ ଅଫିସକୁ ଗଲି। ଉଦୟନାଥ ଷଡ଼ଙ୍ଗୀ ଥାଆନ୍ତି ବାର୍ତ୍ତା ସମ୍ପାଦକ। ମୁଁ ତାଙ୍କ ହାତକୁ ଲେଖାଟି ବଢ଼େଇ ଦେଇ କହିଲି, "ଆମ ଗାଁରୁ ଜଣେ ଭଦ୍ରବ୍ୟକ୍ତି ଦେଇଛନ୍ତି ଲେଖାଟିଏ।" ନିଜ ଲେଖା କହିବାରକୁ ସଙ୍କୋଚ ବୋଧ କଲି। ନିରବରେ ମୁଁ ପ୍ରତି ରବିବାରକୁ ଅପେକ୍ଷା କରିଥାଏ। ମୋର ସବୁ ଆଶା ଓ ଆଶଙ୍କାକୁ ଅନ୍ତ କରି ଶେଷରେ ମହିମା ମେଳା ଅବସରରେ ସମ୍ପାଦକୀୟ ପୃଷ୍ଠାରେ ଲେଖାଟି ବାହାରିଲା। ମୁଁ ଉଲ୍ଲସିତ ହୋଇଉଠିଲି। ସାଙ୍ଗସାଥୀ ଓ ସାର୍‌ମାନଙ୍କୁ ମୋ ଲେଖା ଦେଖାଇଲି। କଅଁଳ ହାତର ଲେଖା। ଲେଖାଟି ମୋର ଗୁରୁଦେବ ପ୍ରଫେସର ବୈଷ୍ଣବ ଚରଣ ସାମଲ, ପ୍ରଫେସର ଅସିତ କବି ଓ ଡ. ଦୋଳଗୋବିନ୍ଦ ଶାସ୍ତ୍ରୀ ଆଦି ସାର୍‌ମାନଙ୍କ ଦୃଷ୍ଟି ଆକର୍ଷଣ କଲା। ସେମାନେ ଲେଖାଟିକୁ ସ୍ୱୀକୃତି ଦେଲେ। ଏଇଠି ମୋ ସାଙ୍ଗମାନଙ୍କ

'ଢେଙ୍କାନାଳିଆ' ଉପହାସର ଅବସାନ ହେଲା । ସେହିଦିନଠାରୁ ଆଗକୁ ମାଡ଼ିଚାଲିଲି । ପରେପରେ ସମାଜ, ପ୍ରଜାତନ୍ତ୍ର, ମାତୃଭୂମି, କଳିଙ୍ଗ ଆଦି ତତ୍କାଳୀନ ସମ୍ବାଦପତ୍ରରେ ବିଭିନ୍ନ ପ୍ରକାର ଲେଖା ମୋର ପ୍ରକାଶ ପାଇବାରେ ଲାଗିଲା ।"

ସେ ଜଣେ ଖୋଲା ହୃଦୟର ମଣିଷ । ନିଜର ବ୍ୟକ୍ତିଗତ ଦୁଃଖସୁଖ ଯନ୍ତ୍ରଣା ସବୁକୁ ବନ୍ଧୁମାନଙ୍କ ଆଗରେ ପ୍ରକାଶ କରନ୍ତି । ଫଳରେ ଏସବୁ କଥା ମୁଁ ଜାଣିବାକୁ ପାଇଲି ।

ଲେଖାଲେଖି ପାଇଁ ଅନୁକୂଳ ପରିବେଶ ପ୍ରଦାନ କଲା ଓଡ଼ିଶା ସରକାରଙ୍କ ଶିକ୍ଷା ବିଭାଗ । ଚାକିରିକାଳ ଭିତରେ ଶିକ୍ଷା ବିଭାଗର ବିଭିନ୍ନ ପଦ ପଦବୀରେ ରହି ସେ ବହୁ ଅଭିଜ୍ଞତା ହାସଲ କରିଛନ୍ତି । ରାଜ୍ୟ ଜନଶିକ୍ଷା ସାଧନ କେନ୍ଦ୍ରରେ ଅବସ୍ଥାପିତ ହୋଇ ସୁଚାରୁ ରୂପେ କାର୍ଯ୍ୟ ନିର୍ବାହ କରିଥିଲେ । ଜନଶିକ୍ଷା ସାଧନ କେନ୍ଦ୍ର ତାଙ୍କ ସାମର୍ଥ୍ୟ ସଂପ୍ରସାରିତ କରିବା ପାଇଁ ବିସ୍ତୃତ ପରିସର ସୃଷ୍ଟି କରିଥିଲା । ଓଡ଼ିଶାର ଶିକ୍ଷକମାନଙ୍କୁ ତାଲିମ ଦେବା ପ୍ରଣାଳୀ ଉପରିସ୍ଥ ଅଫିସରମାନଙ୍କୁ ଦୃଷ୍ଟି ଆକର୍ଷଣ କରିଥିଲା ।

ମହୀଶୂର, ଲକ୍ଷ୍ନୌ, ପୁନେ, କୋଏମ୍ବାଟୁର, ଦିଲ୍ଲୀ, ଚଣ୍ଡିଗଡ଼, ଜୟପୁର(ରାଜସ୍ଥାନ) ଆଦି ସ୍ଥାନକୁ ତାଲିମ ପାଇବା ପାଇଁ ଡ. ନାୟକଙ୍କୁ ପଠାଗଲା । ସଫଳତା ସହ ସେ ତାଲିମପ୍ରାପ୍ତ ହୋଇ ରାଜ୍ୟରେ ମୁଖ୍ୟ ତାଲିମଦାତା ମାନଙ୍କର ତାଲିମ ଅନୁଷ୍ଠିତ କରି ଉଚ୍ଚ ପ୍ରଶଂସିତ ହୋଇଥିଲେ । ସେ ବି ଜାତୀୟ ସ୍ତରର ପୁସ୍ତକ ପ୍ରକାଶନ ଓ ସମୀକ୍ଷା କମିଟିର ସଦସ୍ୟ ହୋଇଥିଲେ । ମାନବ ସମ୍ବଳ ବିକାଶ ମନ୍ତ୍ରାଳୟ ଦ୍ୱାରା ମନୋନିତ ହୋଇ ସେ ରାଜ୍ୟର ବିଭିନ୍ନ ସ୍ଥାନରେ ଲେଖକମାନଙ୍କ ପାଇଁ କର୍ମଶାଳା ଆୟୋଜନ କରିଥିଲେ । ତାଙ୍କ ଅନୁପ୍ରେରଣାରେ ବହୁ ସ୍ଫୁଟନ୍ମୋଖି ପ୍ରତିଭା ତାଲିମ ପାଇ ନୂଆ ନୂଆ ବହି ଲେଖିଲେ ଓ ପ୍ରକାଶ କଲେ ।

ଏ ତ ସବୁ ଥିଲା ତାଙ୍କର ବୃତ୍ତିର କଥା । ବୃତ୍ତି ବାହାରେ ସେ ଅନେକ ବେସରକାରୀ ସ୍ୱେଚ୍ଛାସେବୀ ଅନୁଷ୍ଠାନ ସହ ଜଡ଼ିତ । ଭାରତ ଜ୍ଞାନ ବିଜ୍ଞାନ ସମିତି ସହ ସଂଶ୍ଳିଷ୍ଟ ହୋଇ ଆମ ରାଜ୍ୟରେ ସାକ୍ଷରତା ମିଶନ କର୍ମଶାଳା ମାନଙ୍କରେ ତାଲିମ ପ୍ରଦାନ କରିଛନ୍ତି । 'ନେହରୁ ଯୁବ ପ୍ରତିଷ୍ଠାନ'ରେ ବହୁଦିନ ଧରି ପରାମର୍ଶଦାତା ରହି ଆସିଛନ୍ତି । 'ଅଗ୍ରଗାମୀ' ସ୍ୱେଚ୍ଛାସେବୀ ଅନୁଷ୍ଠାନ ଦ୍ୱାରା ପରିଚାଳିତ 'ରାଜ୍ୟ ଜନଶିକ୍ଷା ସାଧନ କେନ୍ଦ୍ର'ର ନିର୍ଦ୍ଦେଶକ ଭାବେ ଏକବର୍ଷ କାର୍ଯ୍ୟ କରିଥିଲେ ।

ଲେଖିବା ଓ ପଢ଼ିବା ଡ. ନାୟକଙ୍କର ଅନ୍ୟତମ ନିଶା । ସେଇ ହେତୁ ସେ ପର୍ଯ୍ୟାପ୍ତ ଜ୍ଞାନର ଅଧିକାରୀ । ସଭା ସମିତିରେ ଓଜସ୍ୱିନୀ ବକ୍ତୃତା ଦେଇପାରନ୍ତି । ଏଥିରୁ ତାଙ୍କର ବହୁଶାସ୍ତ୍ରଦର୍ଶିତା ଓ ପ୍ରଜ୍ଞା ପ୍ରତିଭାର ପରିଚୟ ମିଳେ । ତାଙ୍କ ଜନ୍ମଭୂମି ମହିମାଗାଦି

ହୋଇଥିବାରୁ ସ୍ୱାଭାବିକ ଭାବରେ ମହିମାଧର୍ମ ଓ ଭୀମଭୋଇଙ୍କ ଜୀବନ ଦର୍ଶନ ପ୍ରତି ଆକୃଷ୍ଟ ହୋଇଥିଲେ। ତାଙ୍କ ସମ୍ପର୍କରେ ଗଭୀର ଅଧ୍ୟୟନ ମଧ୍ୟ କରିଛନ୍ତି। ଓଡ଼ିଶାର ଯେକୌଣସି ସ୍ଥାନରେ ଭୀମଭୋଇଙ୍କର ପ୍ରଚାରିତ ଧର୍ମ ଓ ଅନୁଶାସନ ପାଇଁ ମଠ ମନ୍ଦିର ରହିଛି, ସେଠାରୁ ଡକ୍ଟର ନାୟକଙ୍କୁ ମହିମା ଧର୍ମ ଓ ଦର୍ଶନ ଉପରେ ପ୍ରବଚନ ଦେବାପାଇଁ ନିମନ୍ତ୍ରଣ କରାଯାଏ। ଅଲେଖଧର୍ମ ଓ ଦର୍ଶନ ଉପରେ ତାଙ୍କର ମୋଟ ଆଠଗୋଟି ବହି ପ୍ରକାଶିତ। 'ସନ୍ଥକବି ଭୀମଭୋଇ ଗ୍ରନ୍ଥାବଳୀ' ସମ୍ପାଦନା ଓ ସଂକଳନ ତାଙ୍କର ଏକ ବହୁ ଉଚ୍ଚକୋଟୀର କୃତି ଭାବରେ ଜଣାଶୁଣା।

ଡକ୍ଟର ନାୟକ ତାଙ୍କ ଚାକିରି କାଳ ମଧ୍ୟରେ ବହୁ ଜାତୀୟ ଓ ଅନ୍ତର୍ଜାତୀୟ କର୍ମଶାଳାମାନଙ୍କରେ ଗୁରୁତ୍ୱପୂର୍ଣ୍ଣ ଭୂମିକା ନିର୍ବାହ କରିଛନ୍ତି। ୧୯୯୪ ମସିହାରେ ରାଜ୍ୟ ଜନଶିକ୍ଷା ସାଧନ କେନ୍ଦ୍ର ନୂଆଦିଲ୍ଲୀ ଓ ୱାଇ.ଏମ୍.ସି.ଏ.ଙ୍କ ମିଳିତ ଆନୁକୂଲ୍ୟରେ ନବସାକ୍ଷରଙ୍କ ପାଇଁ ଆଇନ ସହାୟତା ପୁସ୍ତିକା ପାଇଁ ହୋଇଥିବା କର୍ମଶାଳାରେ ସେ ଓଡ଼ିଶାରୁ ପ୍ରତିନିଧିତ୍ୱ କରିବା ସଙ୍ଗେ ସଙ୍ଗେ ସେହି କର୍ମଶାଳାରେ ଅଧ୍ୟକ୍ଷତା ମଧ୍ୟ କରିଥିଲେ।

୧୯୯୬ ମସିହାରେ ଏସିଆ ମହାଦେଶ ଓ ପ୍ରଶାନ୍ତ ମହାସାଗରୀୟ ଦେଶମାନଙ୍କ ପାଇଁ ୟୁନେସ୍କୋ ତରଫରୁ ଭୁବନେଶ୍ୱରଠାରେ ଯେଉଁ କର୍ମଶାଳା ହୋଇଥିଲା, ସେଥିରେ ସେ କ୍ଷେତ୍ର ସଂଯୋଜକ ଦାୟିତ୍ୱ ବହନ କରିଥିଲେ।

ଅଖିଳ ଭାରତୀୟ ଶିଶୁ ସାହିତ୍ୟ ସମ୍ମେଳନର ୩୩ତମ ଉତ୍ସବ ଭୁବନେଶ୍ୱରରେ ଅନୁଷ୍ଠିତ ହୋଇଥିଲା। ଏହି ମହାସମ୍ମେଳନରେ 'ଡିଜାଇନିଂ ଜର୍ଣ୍ଣାଲ ଫର୍ ଚିଲ୍ଡ୍ରେନ୍' ଶୀର୍ଷକ ପ୍ରବନ୍ଧ ଉପସ୍ଥାପନ କରି ପ୍ରଶଂସିତ ହୋଇଥିଲେ।

ଭୀମଭୋଇ, ବାଜି ରାଉତ, ବାଘା ଯତୀନ୍, ଆଲିବାବା କଥା, ବାପୁଙ୍କ ଜୀବନର ମଜା ମଜା କଥା ଆଦି ଅନ୍ୟୁନ ତିରିଶ ଖଣ୍ଡ ଶିଶୁ ସାହିତ୍ୟ ପୁସ୍ତକର ସେ ପ୍ରଣେତା।

ମହିମାଧର୍ମର ଗବେଷକ ଭାବରେ ରାଜ୍ୟରେ ବହୁ ସୁନାମ ଅର୍ଜନ କରିଛନ୍ତି ଡକ୍ଟର ନାୟକ। ଏଥିପାଇଁ ସରକାରୀ ଓ ବେସରକାରୀ ସ୍ତରରେ ବହୁ ଅନୁଷ୍ଠାନ ତରଫରୁ ସମ୍ମାନିତ ଓ ସମ୍ବର୍ଦ୍ଧିତ ମଧ୍ୟ ହୋଇଛନ୍ତି। 'ଭୀମଭୋଇ ସମ୍ମାନ' ଓ 'ମହିମା ଗୌରବ ସମ୍ମାନ' ସହ ଅଖିଳ ଭାରତୀୟ ଓଡ଼ିଆ ପରିଷଦ ପକ୍ଷରୁ ସମ୍ମାନିତ ହୋଇଛନ୍ତି। ଜନପ୍ରିୟ ବିଜ୍ଞାନ ପୁସ୍ତକ (ଶିଶୁବିଭାଗ) ରଚନା ନିମନ୍ତେ ତାଙ୍କୁ ଓଡ଼ିଶା ବିଜ୍ଞାନ ଏକାଡେମୀ ପୁରସ୍କୃତ କରିଛି।

ଡକ୍ଟର ନାୟକ ଏବେ ସେବା ନିବୃତ୍ତ। କିନ୍ତୁ କର୍ମ ନିବୃତ୍ତ ହୋଇନାହାନ୍ତି। ତାଙ୍କର

ଶିକ୍ଷୟିତ୍ରୀ ପତ୍ନୀ ଓ କନ୍ୟାମାନେ ସର୍ବଦା ସାହାଯ୍ୟ ସହାୟତା ବଢ଼େଇ ତାଙ୍କ କଳାକୁ ସମୃଦ୍ଧ କରିଛନ୍ତି। ଜୀବନର ଅପରାହ୍ନରେ ନିଜ ସୁଦୀର୍ଘ ଯାତ୍ରାପଥକୁ ମୂଲ୍ୟାଙ୍କନ କରି ଶ୍ରୀଯୁକ୍ତ ନାୟକ କହନ୍ତି- "ମୋ ଜୀବନକୁ ନେଇ ମୁଁ ସନ୍ତୁଷ୍ଟ। କିନ୍ତୁ ଅବସୋସ ଯେ ଏବେ ଓଡ଼ିଆ ଲେଖା ଓ ଲେଖକଙ୍କ ମଧ୍ୟରେ ରହିଛି ବିରାଟ ବ୍ୟବଧାନ। ଅଧ୍ୟୟନର ଭିତ୍ତିଭୂମି ନ ଥାଇ ଆମ ସାହିତ୍ୟିକମାନେ ସାହିତ୍ୟ ସୌଧ ଗଢ଼ିବାକୁ ଚାହୁଁଛନ୍ତି। ଶିଶୁ ସାହିତ୍ୟର ଏକାନ୍ତ ଅଭାବ। ଭଲ ଶିଶୁ ସାହିତ୍ୟ ଆଉ ସୃଷ୍ଟି ହେଉନାହିଁ। ଶିଶୁଙ୍କ ଆତ୍ମାକୁ ଉପଯୁକ୍ତ ଖାଦ୍ୟ ନ ଦେଲେ ସେମାନେ ଉତ୍ତମ ନାଗରିକ ହେବେ କେମିତି ?"

ତାଙ୍କର ସରଳ, ନିରଳସ, ନିରାଡ଼ମ୍ବର ବ୍ୟକ୍ତିତ୍ୱ ସମସ୍ତଙ୍କୁ ମୁଗ୍ଧ କରେ। ସେ କେବଳ ମହିମାଗାଦି ମାଟିର ଯୋଗ୍ୟପୁତ୍ର ନୁହନ୍ତି, ସମଗ୍ର ଓଡ଼ିଶା ଓ ଓଡ଼ିଆ ସାହିତ୍ୟ ପାଇଁ ଜଣେ ଅନୁକରଣୀୟ ବ୍ୟକ୍ତିତ୍ୱ। ତାଙ୍କର ଜୀବନଯାତ୍ରା ସଫଳ ହୋଇଛି।

ଭୈରବ କଲେଜ,
ଡାବୁଗାଁ, ନବରଙ୍ଗପୁର



୧୧.୦୬.୧୯୯୦ରୁ ୨୫.୦୬.୧୯୯୦ରେ ମହୀଶୂରଠାରେ ଅନୁଷ୍ଠିତ 'ଜନସଂଖ୍ୟା ଶିକ୍ଷା' ଜାତୀୟ କର୍ମଶାଳାରେ ଓଡ଼ିଶାର ପ୍ରତିନିଧି ଭାବରେ ଯୋଗଦାନ। ପାଖରେ ଉପସ୍ଥିତ ଅଛନ୍ତି ଅନୁଷ୍ଠାନର ମୁଖ୍ୟ ଶ୍ରୀ ଚରଣଜିତ ସିଂ ଓ ଆନ୍ତର୍ଜାତିକ ସ୍ତରୀୟ ସଂସାଧକ ଡକ୍ଟର ଅନ୍‌ସାର ଅଲ୍ଲୀ ଖାନ୍ (ପାକିସ୍ତାନ)



# ଏକ ବିରଳ ବ୍ୟକ୍ତିତ୍ୱ

**ଶିକ୍ଷୀ ପରେଶ ପଟ୍ଟନାୟକ**

**ସେ ଢେଙ୍କାନାଳବାସୀ ହୋଇ ମଧ୍ୟ କେବେ କୌଣସିଠାରେ ସମ୍ମାନ ପାଇଁ ଲାଳାୟିତ ହେବା ଦେଖିନାହିଁ। ଢେଙ୍କାନାଳ ମହୋତ୍ସବ ୧୯୯୯ରୁ ଆରମ୍ଭ ହେଲାଣି। ଜଣେ ଆଗଧାଡ଼ିର ଲେଖକ, ପ୍ରାବନ୍ଧିକ ଭାବରେ ସେ ଏଯାଏ ମନେପଡ଼ି ନାହାନ୍ତି।**

ଆମ ଘର 'କବିକୁଟୀର'କୁ ଅନେକ ବିଶିଷ୍ଟ ବ୍ୟକ୍ତିଙ୍କର ଯିବା ଆସିବା ସଦାସର୍ବଦା ଲାଗିଥାଏ। ବାପା ଥିଲାବେଳେ ଏବଂ ଆଜି ବାପା ଚାଲିଯିବାର ୨୪ ବର୍ଷ ହୋଇଗଲା ପରେ ମଧ୍ୟ। ସେମାନଙ୍କ ଭିତରେ ଯୋରନ୍ଦା ନାଟିମା ଗ୍ରାମର ଡ. ଉଦ୍ଧବ ଚରଣ ନାୟକ ଭାଇନା ହେଉଛନ୍ତି ଅନ୍ୟତମ। ମୋର ପିତା ଏ ମାଟିର ବିଶିଷ୍ଟ ସାହିତ୍ୟିକ ଶିକ୍ଷାବିତ କବିଭୂଷଣ ରାଜକିଶୋର ପଟ୍ଟନାୟକ। ସେ ନିଜସ୍ୱ ଉଦ୍ୟମରେ 'ସତ୍ୟଦୀପ' ନାମକ ଏକ ଧର୍ମମୂଳକ ପତ୍ରିକା ପ୍ରକାଶ କରୁଥିଲେ। ସେ ପତ୍ରିକା ପାଇଁ ବହୁ ନାମୀଦାମୀ ଗୁଣୀ ଜ୍ଞାନୀ ବ୍ୟକ୍ତିମାନଙ୍କଠାରୁ ଲେଖା ଲୋଡୁଥିଲେ। ମୋର ଠିକ୍ ମନେ ପଡୁଛି ୧୯୮୭ ମସିହାର କଥା। ବୈଶାଖ ପୂର୍ଣ୍ଣିମା ଅବସରରେ 'ସତ୍ୟଦୀପ' ପ୍ରକାଶ ପାଇବାରେ ଯେଉଁ କେତେଜଣଙ୍କର ଲେଖା ପ୍ରକାଶ ପାଇଥିଲା ସେମାନଙ୍କ ଭିତରେ ଡକ୍ଟର ଉଦ୍ଧବ ଚରଣ ନାୟକଙ୍କର 'ଶ୍ରୀରାମଙ୍କ ଅବତାର ପୂର୍ବରୁ ନାରଦଙ୍କ ଶ୍ରୀରାମଙ୍କ ଦର୍ଶନ' ଶୀର୍ଷକ ଲେଖାଟି ପ୍ରକାଶ ପାଇଥିଲା। ସେତେବେଳେ ସେ ଓଡ଼ିଶା ସୁଦୂର ପର୍ଯ୍ୟବେକ୍ଷଣ ଉପଯୋଗ କେନ୍ଦ୍ରରେ ଥିଲେ କାର୍ଯ୍ୟରତ। ଜଣେ ଧାର୍ମିକ ବ୍ୟକ୍ତି ଭାବରେ 'ଦିବ୍ୟ ରାମାୟଣ'ର କଥାବସ୍ତୁ ସଂଗ୍ରହ କରି ସେ ଯେଉଁପରି ଭାଷା ଶୈଳୀରେ ବିଷୟଟି ଉପସ୍ଥାପନା କରିଥିଲେ ତାକୁ ଦେଖିଲେ ସ୍ୱତଃ ଆମକୁ ଲାଜ ଲାଗେ। ଆମେ ସେହିପରି ଲେଖା ଲେଖିପାରିବା ତ ? ଭଗବାନ ନାରାୟଣଙ୍କ ସ୍ଥାନରେ ନାରଦ ମହର୍ଷିଙ୍କର ଶ୍ରୀରାମ, ଲକ୍ଷ୍ମଣ, ମା' ସୀତାଙ୍କ ଦର୍ଶନ କିଭଳି ଭାବରେ

ସମ୍ପୂର୍ଣ୍ଣ ହୋଇପାରିଛି ତା'ର ଯଥାଯଥ ପ୍ରମାଣ ଦେଇ ଏକ ମହତ୍ତର କାର୍ଯ୍ୟ ସମ୍ପନ୍ନ କରିଥିଲେ। ଆଜି ଦୀର୍ଘ ୨୯ ବର୍ଷ ତଳର ଲେଖା- ଭାଇନାଙ୍କର ଏକଥା ମନେଥିବ କି ନା ମୁଁ ଜାଣେନା।

ତାଙ୍କ ବିଷୟରେ କ'ଣ ଲେଖିବି ବୋଲି ଭାବିବା ସମୟରେ ହଠାତ ଦୃଷ୍ଟି ପଡ଼ିଗଲା 'ସତ୍ୟଦୀପ' ଉପରେ, ପରେ ଭାଇନାଙ୍କ ଦ୍ୱାରା ପ୍ରକାଶିତ 'ମହିମା ଅଲୋକ'। ପୃଥିବୀର ଶ୍ରେଷ୍ଠଧର୍ମ ମହିମାଧର୍ମ ଉପରେ ଯଦି କେହି ପ୍ରାମାଣିକ ତଥ୍ୟ ଦେଇ ଖୋରାକ ଯୋଗାଇବାରେ ସାହାଯ୍ୟ କରିଥାନ୍ତି ସେ ହେଉଛନ୍ତି ଡକ୍ଟର ନାୟକ। 'ମହିମା ଅଲୋକ' ଭୁବନେଶ୍ୱରରୁ ପ୍ରକାଶିତ ହେଉଥିଲେ ମଧ୍ୟ ନିଜ ଜନ୍ମମାଟି, ନିଜର ଗୁରୁ ଗୁରୁଜନଙ୍କୁ ଭୁଲି ନ ଯାଇ ମୋର ପିତା କବିଭୂଷଣଙ୍କୁ ସେଥିରେ ଉପଦେଷ୍ଟା ଭାବରେ ସ୍ଥାନିତ କରିଥିଲେ। ଆଜିକାଲି ଏସବୁ ଦେଖିବାକୁ କ୍ୱଚିତ ମିଳିଥାଏ। ଆଜି ନିଜର ପ୍ରଚୁର ସମ୍ମାନରେ ଲୋକେ ଆନନ୍ଦିତ। ଅନ୍ୟକୁ ବୁଝିବାକୁ, ଅନ୍ୟକୁ ପ୍ରଶଂସା କରିବାକୁ ବେଳ ନାହିଁ କି ଇଚ୍ଛା ନାହିଁ। ହେଲେ ଡକ୍ଟର ନାୟକ ଏହାର ବ୍ୟତିକ୍ରମ। ସେ ଢେଙ୍କାନାଳବାସୀ ହୋଇ ମଧ୍ୟ କେବେ କୌଣସିଠାରେ ସମ୍ମାନ ପାଇଁ ଲାଳାୟିତ ହେବା ଦେଖିନାହିଁ। ଢେଙ୍କାନାଳ ମହୋତ୍ସବ ୧୯୯୯ରୁ ଆରମ୍ଭ ହେଲାଣି। ଜଣେ ଆଗଧାଡ଼ିର ଲେଖକ, ପ୍ରାବନ୍ଧିକ ଭାବରେ ସେ ଏଯାଏ ମନେପଡ଼ି ନାହାନ୍ତି। ଏବେ ଅଳ୍ପ କିଛିଦିନ ତଳେ ତାଙ୍କର ଶ୍ୱଶୁର ଆମ ମାଟିର ପୂଜ୍ୟ ଗୁରୁଦେବ ଶ୍ରୀ ସନାତନ ସାରଙ୍କ ମହାପ୍ରୟାଣ ଅବସରରେ ତାଙ୍କର ପ୍ରତ୍ୟକ୍ଷ ପ୍ରେରଣା ପ୍ରୋତ୍ସାହନରେ ଏକ 'ଶ୍ରଦ୍ଧାଞ୍ଜଳି ପତ୍ରିକା' ପ୍ରକାଶ କରାଗଲା। ଯେତେ କହିଲେ ମଧ୍ୟ ତାଙ୍କର ନାମ କେଉଁଠି ରଖିବାକୁ ଚାହିଁ ନଥିଲେ ସେ। ସେଥିପାଇଁ ସେ ଜଣେ ବିରଳ ବ୍ୟକ୍ତିତ୍ୱ। ଇଂରାଜୀରେ ଗୋଟିଏ କଥା ଅଛି, "A man may die, but his ideals always live" ଶ୍ରୀଯୁକ୍ତ ନାୟକ ଏ କଥାର ଅର୍ଥକୁ ମର୍ମେ ମର୍ମେ ବୁଝିଥିଲା ପରି ମନେହୁଏ।

ତାଙ୍କୁ ମୁଁ ଆମ ଘରେ ବହୁବାର ଦେଖିବା ସହ ବିଭିନ୍ନ ସଭାସମିତିରେ ଦେଖିଛି। ସେ ମଧ୍ୟ ଆମ ସଂସଦ 'କବିଭୂଷଣ ସ୍ମୃତି ପରିଷଦ'କୁ ଅତିଥି ଭାବରେ ଅନେକ ଥର ଆସିଛନ୍ତି। ଜୀବନ କ୍ଷଣଭଙ୍ଗୁର ବୋଲି ଜାଣି ସେ ନିଜର କର୍ତ୍ତବ୍ୟ ନିଷ୍ଠା ସହ ସମାଜର ଉନ୍ନତି ପାଇଁ ଓଡ଼ିଆ ଭାଷା ସାହିତ୍ୟ ପାଇଁ ଯେପରି ଭାବରେ ନିଜକୁ ନିୟୋଜିତ କରିଛନ୍ତି ସେଥିରେ ତାଙ୍କ ଜୀବନ ସଫଳ ହୋଇଛି। ଏଥିରେ ଦ୍ୱିମତର କାରଣ ନାହିଁ। କେତେବେଳେ ଫୋନ୍ କଲେ ବା ସାକ୍ଷାତ ହେଲେ ମୁଁ ତାଙ୍କୁ 'ଆଜ୍ଞା' କରେ, 'ସମ୍ମାନ' କରେ ବଡ଼ଭାଇର ମାନ୍ୟତା ଦିଏ। ସେ ମଧ୍ୟ ମୋତେ ଏବଂ ମୋର ସହଧର୍ମିଣୀଙ୍କୁ

କନିଷ୍ଠ ହିସାବରେ ସ୍ନେହ କରନ୍ତି । ଜଣେ ସରଳ ନିଷ୍ପାପ ହୃଦୟର ମଣିଷଟିଏ ସିଏ । ତାଙ୍କ ବିଷୟରେ ଦୁଇଧାଡ଼ି ଲେଖିବାକୁ ଆୟୋଜକମାନେ ମତେ କହିଥିବାରୁ ମୁଁ ନିଜକୁ ଧନ୍ୟ ମନେ କରିବା ସଙ୍ଗେ ସଙ୍ଗେ ଭାବୁଛି ମୁଁ ବା କ'ଣ ତାଙ୍କ ଉପରେ ଲେଖିବି ? ମହାସମୁଦ୍ର ପାଖରେ ଛିଡ଼ାହୋଇ ଲହଡ଼ି ଗଣିବା ସିନା ସାର ହେବ ।

ଜୀବନର ଅର୍ଦ୍ଧେକ ସମୟ ନିଜକୁ ସାହିତ୍ୟ ସାଧନାରେ ବ୍ରତୀ କରି ଦେଇଥିବା ମଣିଷ ପିଲାଟି ଦିନରୁ ସଂଘର୍ଷ ଦେଇ ଗତି କରି ଆଜି ସମାଜରେ ପ୍ରତିଷ୍ଠିତ । ମୋର ଠିକ୍ ମନେ ଅଛି, ନାଟ୍ୟ ଜଗତର ଜଣେ ବରିଷ୍ଠ ନାଟ୍ୟକାର ଡକ୍ଟର ଭୌମିକ ମହୋଦୟ କହୁଥିଲେ, "ଜଣେ ଲେଖକ ବା କବି ତା' ଜୀବନରେ ଯାହା କରୁ ନା କାହିଁକି, ଯେତେ ନିମ୍ନ ମାନର ଲେଖା ଲେଖିଥାଉ ନା କାହିଁକି ସୃଷ୍ଟି କରିଥାଉ ପୁସ୍ତକଟିଏ ।" ପୁସ୍ତକ ହେଉଛି କବିର ମାନସ ସନ୍ତାନ, ଦିନେ ନା ଦିନେ ସେ ତୁମକୁ ଲୋକଲୋଚନକୁ ଆଣିବାରେ ସହାୟକ ହେବ । ଏ ଦୃଷ୍ଟିରୁ ମଧ୍ୟ ଦେଖିଲେ ଡକ୍ଟର ନାୟକଙ୍କର ସୃଷ୍ଟି ବହୁତ । ଅନେକ ନାମୀଦାମୀ ପତ୍ରପତ୍ରିକାରେ ତାଙ୍କର ଲେଖାମାନ ପ୍ରକାଶିତ । ସେ ଠିକ୍ ବୁଝିଛନ୍ତି ସଂଘର୍ଷରୁ ପ୍ରେମ, ପ୍ରେମରୁ ସୌନ୍ଦର୍ଯ୍ୟ, ସୌନ୍ଦର୍ଯ୍ୟରୁ ଆନନ୍ଦ ଏବଂ ଆନନ୍ଦ ମଣିଷକୁ ଦିବ୍ୟ ଆନନ୍ଦ ପ୍ରଦାନ କରିବାରେ ସାହାଯ୍ୟ କରେ । ଆଜି ଢେଙ୍କାନାଳ ମାଟିର ଅନେକ ବରପୁତ୍ର ସ୍ୱ ସ୍ୱ ସ୍ଥାନକୁ ଚାଲିଯାଇଥିଲେ ମଧ୍ୟ ରଖି ଦେଇ ଯାଇଛନ୍ତି ସେମାନଙ୍କର ଦିବ୍ୟ ସୃଷ୍ଟି ସମୂହ, ଯାହା ଆଗାମୀ ଯୁବପିଢ଼ି ପାଇଁ ଅମୂଲ୍ୟ ସମ୍ପତ୍ତି ହୋଇ ରହିବ ।

ଡକ୍ଟର ନାୟକଙ୍କ ପରି ଜଣେ ସରଳ ମିଷ୍ଟଭାଷୀ ମଣିଷଙ୍କ ନାଁରେ ଯେଉଁମାନେ ଅଭିନନ୍ଦନିକା ପ୍ରକାଶ କରିବାକୁ ସ୍ଥିର କରିଛନ୍ତି ସେମାନଙ୍କୁ ମୁଁ ବ୍ୟକ୍ତିଗତ ଭାବରେ ତଥା 'କବିଭୂଷଣ ସ୍ମୃତି ସଂସଦ' ତରଫରୁ ଧନ୍ୟବାଦ ଜଣାଉଛି । ଶ୍ରୀଯୁକ୍ତ ନାୟକଙ୍କର ଦୀର୍ଘ ଜୀବନ କାମନା କରିବା ସହ ତାଙ୍କ ଲେଖନୀର ଜୟଗାନ କରୁଛି । ଜଗତର ନାଥ ଜଗନ୍ନାଥ ପରମ କାରୁଣିକ ତାଙ୍କର ଅବସରକାଳୀନ ଜୀବନକୁ କୁସୁମିତ କରନ୍ତୁ ।

ଶାନ୍ତି ଓମ୍

କବିକୁଟୀର, କବିଭୂଷଣ ମାର୍ଗ
ଢେଙ୍କାନାଳ, ଫୋନ: ୭୮୭୩୬୦୦୨୬୪



# ଡକ୍ଟର ଉଦ୍ଧବ ନାୟକଙ୍କୁ ଚିଠିଟିଏ

'ବୈକୁଣ୍ଠ ସମାନ' ପରିବାର ମଧ୍ୟରେ ବିକ୍ରମାଦିତ୍ୟ ସିଂହାସନ ପରି ଆସନରେ ଆସୀନ ହୋଇ ଆପଣ ସୃଷ୍ଟି କରୁଥିବା ସାହିତ୍ୟ ଓଡ଼ିଆ ଜ୍ଞାନ ଭଣ୍ଡାରକୁ ଆହୁରି ସମୃଦ୍ଧ କରିବ, ସମାଜକୁ ଅନେକ ଉପହାର ଅଜାଡ଼ି ଦେବ- ଏହା ହିଁ ମୋର ଦୃଢ଼ ବିଶ୍ୱାସ।

ମହାଶୟ !

ଆପଣ ୭୦ ବର୍ଷ ଅତିକ୍ରମ କରିଥିବା ହେତୁ ପ୍ରଥମେ ଆପଣଙ୍କୁ ଶୁଭେଚ୍ଛା ଜଣାଉଛି। ଆପଣଙ୍କ ବିଷୟରେ ଦି'ପଦ ଲେଖିବାର ସୁଯୋଗ ମିଳିଥିବାରୁ ମୁଁ ନିଜକୁ ଧନ୍ୟ ମନେକରୁଛି। ଆପଣଙ୍କ ବିରଳ ବ୍ୟକ୍ତିତ୍ୱ ସମ୍ପର୍କରେ ଲେଖିବସିଲେ ମୋ ପାଇଁ ଶବ୍ଦ ଅଭାବ ପଡ଼ିବ। ଆପଣଙ୍କ ଭିତରେ ପୂରି ରହିଛି ଅପାର ଲେଖକୀୟ ଶକ୍ତି ଓ ସାମର୍ଥ୍ୟ। ଆପଣ ଜଣେ ସଫଳ ତଥା ନୀତିନିଷ୍ଠ ସାହିତ୍ୟ ସାଧକ। 'ସଂକଳ୍ପବଦ୍ଧ ସାହିତ୍ୟ ସମାଜ' ଗଠନ ପାଇଁ ଆପଣ ଜଣେ ଦୃଢ଼ମନା ବ୍ୟକ୍ତି। ଆପଣଙ୍କର ସଫଳତା ଆପଣଙ୍କର ନୁହେଁ, ଏହା ସାରା ଓଡ଼ିଶାବାସୀଙ୍କର। ଆପଣ ଜଣେ ଦିଗ୍‌ଦର୍ଶକ। ଆପଣଙ୍କ ରଚିତ 'ସନ୍ଥକବି ଭୀମଭୋଇ' ଓ 'ଓଡ଼ିଶା ରାଜନୀତିର ଇତିହାସ' ଦ୍ୱୟ ଓଡ଼ିଆ ସାହିତ୍ୟ ଓ ସଂସ୍କୃତି ଜଗତରେ ଗୋଟିଏ ଲେଖାଏଁ ମାଇଲ୍ ଖୁଣ୍ଟ କହିଲେ ଅତ୍ୟୁକ୍ତି ହେବନାହିଁ।

ଆପଣଙ୍କ ରଚନା ରାଜିରେ ପୂରି ରହିଛି ସାଂସ୍କୃତିକ ଶକ୍ତି। ଆପଣ ଜଣେ ଶାନ୍ତ, ଧୀର ଓ ନମ୍ର ସ୍ୱଭାବର ବ୍ୟକ୍ତି, ଯେମିତି ଫଳନ୍ତି ବୃକ୍ଷ ଭୂଇଁ ଆଡ଼କୁ ନଇଁ ପଡ଼ିଥାଏ। ଅନେକ ପୁରସ୍କାର, ସମ୍ମାନ, ସମ୍ବର୍ଦ୍ଧନା ଲାଭ କରିଥିଲେ ହେଁ ଆପଣଙ୍କୁ ଗର୍ବ ଓ ଅହଂକାର ତିଳେ ହେଲେ ସ୍ପର୍ଶ କରିପାରିନାହିଁ। ଆପଣଙ୍କ ବାର୍ତ୍ତା ଅଗଣିତ ପାଠକ ପାଠିକାଙ୍କ ଦ୍ୱାରା ଆଦୃତ। ଆପଣ ଓଡ଼ିଶା ମାଟିର ଗର୍ବ-ଗୌରବ ଓ ସମ୍ମାନ ଏଥିରେ ସନ୍ଦେହ ନାହିଁ। ଆପଣଙ୍କ ଭିତରେ ଲୁଚି ରହିଛି ଅସୀମ ସାମର୍ଥ୍ୟ। ସେ ସବୁକୁ ପ୍ରକଟ କରିବା ପାଇଁ ବୟସ କେବେ ବି ବାଧକ ସାଜିବ ନାହିଁ, ଏହା ମୋର ଦୃଢ଼ ବିଶ୍ୱାସ। ଆପଣ

ବାରମ୍ବାର ପାଠକମାନଙ୍କୁ ଓଡ଼ିଶାର ସାହିତ୍ୟ, ସଂସ୍କୃତି, ପରମ୍ପରା ଓ ଇତିହାସ ସମ୍ପର୍କରେ ପରିଚିତ କରାଇଛନ୍ତି ଆପଣଙ୍କ ଲେଖନୀ ମୁନରେ। ବର୍ତ୍ତମାନ ପତ୍ରପତ୍ରିକା ଆଡ଼େଇ ଦେବାମାତ୍ରେ ଆପଣଙ୍କ ଲେଖନୀର ବାସ୍ନା ଚହଟି ଉଠେ। ଏଭଳି ବ୍ୟକ୍ତିତ୍ୱଙ୍କ ସହ ପରିଚୟ ମୋ' ପାଇଁ ଅତ୍ୟନ୍ତ ଗର୍ବ ଓ ଗୌରବର ବିଷୟ।

ଆପଣଙ୍କ ସହ ପରିଚୟ ଏଇ ମାତ୍ର କେତେବର୍ଷର ହେଲେ ବି ମନେହୁଏ ଏହା ଦୀର୍ଘଦିନର। ଆପଣ ମୋ ବିଦ୍ୟାଳୟରେ ମୁଖ୍ୟ ଅତିଥି ଭାବରେ ବହୁବାର ଆସନ ଗ୍ରହଣ କରି ଆମମାନଙ୍କୁ ଗୌରବାନ୍ୱିତ କରିଛନ୍ତି। ମୋର ମା' ଶ୍ରୀମତୀ ଅନ୍ନପୂର୍ଣ୍ଣା ମହାପାତ୍ରଙ୍କ ରଚିତ ପୁସ୍ତକ 'ଏଇ ମାଟିର ଅଲିଭା ଦୀପ' ପ୍ରକାଶନରେ ସହାୟତା ଓ ଉତ୍ସାହ ପ୍ରଦାନ କରି ନିଜର ଉଦାରତା ପରିପ୍ରକାଶ କରିଛନ୍ତି। ଆପଣଙ୍କର ନମ୍ର ଓ ଅମାୟିକ ବ୍ୟବହାର ଆମ ସମସ୍ତଙ୍କୁ ମୁଗ୍ଧ ଓ ଆକୃଷ୍ଟ କରିଛି।

'ବୈକୁଣ୍ଠ ସମ୍ମାନ' ପରିବାର ମଧ୍ୟରେ ବିକ୍ରମାଦିତ୍ୟ ସିଂହାସନ ପରି ଆସନରେ ଆସୀନ ହୋଇ ଆପଣ ସୃଷ୍ଟି କରୁଥିବା ସାହିତ୍ୟ ଓଡ଼ିଆ ଜ୍ଞାନ ଭଣ୍ଡାରକୁ ଆହୁରି ସମୃଦ୍ଧ କରିବ, ସମାଜକୁ ଅନେକ ଉପହାର ଅଜାଡ଼ି ଦେବ- ଏହା ହିଁ ମୋର ଦୃଢ଼ ବିଶ୍ୱାସ। ଆପଣଙ୍କର ନିରାମୟ ଜୀବନ କାମନା କରିବା ସହ ଆପଣଙ୍କର ଭବିଷ୍ୟତ ସୁଖମୟ ଓ ସମ୍ମାନ ମଣ୍ଡିତ ହେଉ ଏହା ହିଁ ଶ୍ରୀଜଗନ୍ନାଥଙ୍କ ପାଖରେ ପ୍ରାର୍ଥନା।

ଆପଣଙ୍କର ଗୁଣମୁଗ୍ଧା

**ଯଶସ୍ୱିନୀ ମହାପାତ୍ର,**

ପ୍ରିନ୍ସିପାଲ, ମାରିଆ ମାଣ୍ଟେସୋରୀ ବିଦ୍ୟାଳୟ, ୟୁନିଟ୍-୬, ଭୁବନେଶ୍ୱର



୧୨.୨.୨୦୧୨ରେ ଖ୍ୟାତନାମା ହିନ୍ଦି ସାହିତ୍ୟିକ ଡ. ଉଦୟ ପ୍ରକାଶଙ୍କ ହାତରୁ **'ଝୁମୁକା ସାରସ୍ୱତ ସମ୍ମାନ'** ଗ୍ରହଣ

# Dr. Uddhab Charan Nayak

Prof. Premananda Das

I came to know Uddhab Babu since he often visited Sri Gokulananda Mohapatra, Senior Scientist one of my colleague in the Department of Science, Technology and Environment in the year 1983. He joined to work with Sri Gokulananda Mohapatra who joined as the first Chief Executive, Orissa Remote Sensing Application Centre on deputation. I knew of his interest in Odia literature. Later he obtained a Ph.D. degree in Odia. He is well known for his work on Bhima Bhoi and Mahima Dharma.

Later he joined Education Departmant of Govt of Odisha, worked in various capacities and also as Director, State Resource Center for Adult and Continuing Education, Rayagada. He is often invited to speak on Mahima literature and Bhima Bhoi. He is an active contributor to Odia literature even now.

C-122, HIG, State Housing Board Colony,
Baramunda, Bhubanwswar-751003

# ସଂକ୍ଷେପରେ ନିଜକଥା

ମୋର ପୂର୍ବପୁରୁଷ କଟକନଗର ଅନ୍ତଃପାତୀ ବୟାଳିଶ ମୌଜା ଧୂଳିସର ଗ୍ରାମର ବାସିନ୍ଦା। ପରଚେଗୀତା ଓ ଶିବ ବା ଶୈବ ପୁରାଣ ଆଦିର ରଚୟିତା ପ୍ରାଚୀନକବି ଦ୍ୱାରକା ଦାସ (୧୬୬୨-୧୭୪୦) ଆମର ପୂର୍ବପୁରୁଷ। କାଳକ୍ରମେ ମୋ ବଂଶର ବିଶିଷ୍ଟ ପଣ୍ଡିତ ଶ୍ରୀଚରଣ ନାୟକ (୧୭୯୫) କଟକ ଜିଲ୍ଲାର ଆଠଗଡ଼ଜାତ ରାଜ୍ୟର ଶାସକ ରାଜାଙ୍କ ନିମନ୍ତ୍ରଣ କ୍ରମେ ଆଠଗଡ଼ ରାଜଦରବାରକୁ 'ରାଜଗୁରୁ' ଭାବରେ ଚାଲି ଆସି ସେଠାରେ ସ୍ଥାୟୀ ବାସିନ୍ଦା ହୋଇ ରହିଲେ।

ଶ୍ରୀଚରଣ ନାୟକଙ୍କ ପୁତ୍ର ନୀଳାଦ୍ରି ସାମନ୍ତରାୟ (୧୮୪୦) 'ରାଜଗୁରୁ' ପଦ ତ୍ୟାଗ ପୂର୍ବକ ରାଜକର୍ମଚାରୀ ଭାବରେ ସର୍ବରାକାର ପଦବୀରେ ଅଧିଷ୍ଠିତ ହୋଇ ଜଣେ ଉତ୍ତମ ପ୍ରଶାସକ ଭାବରେ 'ସାମନ୍ତରାୟ' ଉପାଧିପ୍ରାପ୍ତ ହେଲେ। ତାଙ୍କର ଚାରିପୁତ୍ର ମଧ୍ୟରୁ ମୋହନକୃଷ୍ଣ (୧୮୬୫) ଆଠଗଡ଼ରେ ରହିଲେ। ମଧ୍ୟମପୁତ୍ର ବାଳକୃଷ୍ଣ (୧୮୬୮) ଢେଙ୍କାନାଳର ବଉଳପୁରର ଅଧିବାସୀ ହୋଇଗଲେ। ତୃତୀୟପୁତ୍ର କୃତ୍ତିବାସ (୧୮୭୧) ଢେଙ୍କାନାଳର ତେନ୍ତୁଳିପାଟଣାରେ ଓ ସର୍ବକନିଷ୍ଠ ପୁତ୍ର ବୁଦ୍ଧିମନ୍ତ (୧୮୭୫) ହିନ୍ଦୋଳଗଡ଼ଜାତ ରାଜ୍ୟରେ ଅବସ୍ଥାନ କଲେ। ବାଳକୃଷ୍ଣଙ୍କର ତିନି ପୁତ୍ର, ଉଦୟଭାନୁ (୧୮୮୫-୧୯୧୨), ଦୀନବନ୍ଧୁ (୧୮୯୦-୧୯୭୪) ଓ ପୂର୍ଣ୍ଣଚନ୍ଦ୍ର (୧୯୧୪-୧୯୪୦)। ଉଦୟଭାନୁ ମଢ଼ି(କାମାକ୍ଷାନଗର) ଇଲାକାରେ ଘରଦ୍ୱାର କରି ଅବସ୍ଥାନ କଲେ। ଦୀନବନ୍ଧୁ ଢେଙ୍କାନାଳର ମହିମା ଗାଦିକୁ ଚାଲିଆସିଲେ। ଏଠାରେ କଟକ ଜିଲ୍ଲା ମାହାଙ୍ଗା ଅଞ୍ଚଳର ଜନୈକ ମହିମା ଧର୍ମାବଲମ୍ବୀ ଆନନ୍ଦ ରାଉଳ ତାଙ୍କର ପତ୍ନୀ ପାଟ ମହାଦେଈ ଓ ଏକମାତ୍ର କନ୍ୟା ପାର୍ବତୀଙ୍କ ସହ ମହିମା ସନ୍ନ୍ୟାସୀ ସିଦ୍ଧ ବଡ଼କୃପାସିନ୍ଧୁ ବାବାଙ୍କ ଆଜ୍ଞାରେ ମହିମାଗାଦିକୁ ଚାଲିଆସିଥିଲେ। ସିଦ୍ଧ ବଡ଼କୃପାସିନ୍ଧୁ ବାବା ଥିଲେ ମହିମାଧର୍ମର ପ୍ରାଣ ପ୍ରତିଷ୍ଠାତା ମହିମା ଗୋସେଇଁଙ୍କର

ପଟ୍ଟଶିଷ୍ୟ। ଦୀନବନ୍ଧୁ ନାୟକ ଆନନ୍ଦ ରାଉଳଙ୍କ କନ୍ୟା ପାର୍ବତୀଙ୍କର ପାଣିଗ୍ରହଣ କରି ମହିମାଗାଦି ଠାରେ ଘରଜ୍ୱାଇଁଆ ହୋଇ ରହିଗଲେ। ଦୀନବନ୍ଧୁ ନାୟକ ହେଉଛନ୍ତି ମୋର ଜେଜେବାପା ଓ ପାର୍ବତୀ ଦେଈ ମୋର ଜେଜେମା (ବୁଢ଼ୀମା)। ଜେଜେବାପା ଦୀନବନ୍ଧୁ ନାୟକ ଥିଲେ ଜଣେ ଚଉତିଶାକାର ଓ ଆଧ୍ୟାତ୍ମିକ ପ୍ରବଚକ।

ଦୀନବନ୍ଧୁ ନାୟକ ଓ ପାର୍ବତୀ ଦେବୀଙ୍କର ତିନିପୁତ୍ର ଓ ତିନିକନ୍ୟା। ପ୍ରଥମେ କନ୍ୟା ପଦ୍ମାବତୀ (୧୯୨୦), ଦ୍ୱିତୀୟ କନ୍ୟା କୁନ୍ତଳା କୁମାରୀ (୧୯୨୨), ତୃତୀୟରେ ପୁତ୍ର ଅନନ୍ତ ଚରଣ (୧୯୨୫), ଚତୁର୍ଥରେ ପୁତ୍ର ଅଚ୍ୟୁତାନନ୍ଦ(୧୯୨୮), ପଞ୍ଚମରେ କନ୍ୟା ସତ୍ୟବତୀ (୧୯୩୧), ଷଷ୍ଠରେ ପୁତ୍ର ଲଳିତମୋହନ(୧୯୪୦) ଜନ୍ମଲାଭ କରିଥିଲେ।

ମୋର ବାପା ଅନନ୍ତ ଚରଣ ନାୟକ (୧୯୨୫-୨୦୦୮)ଙ୍କର ଶୁଭ ପରିଣୟ ଅନୁଷ୍ଠିତ ହେଲା ଗଁଦିଆର ବିଶିଷ୍ଟ ଧନାଢ୍ୟ ଓ ଧର୍ମପ୍ରାଣ ବ୍ୟକ୍ତି ଅଧିକାରୀ ଦାସଙ୍କ କନିଷ୍ଠା କନ୍ୟା ସୁକୁମାରୀଙ୍କ ସହିତ। ମୋର 'ବୋଉ' ହେଲେ ସୁକୁମାରୀ ନାୟକ। ଅନନ୍ତ ଚରଣ ନାୟକ ଓ ସୁକୁମାରୀ ନାୟକଙ୍କର ଜ୍ୟେଷ୍ଠପୁତ୍ର ଭାବରେ ମୋର ଜନ୍ମ ୧୯୪୬ ମସିହା ଜୁନ୍ ୧୭ ତାରିଖ ବସୁମତୀ ସ୍ନାନ ଦିବସରେ ଢେଙ୍କାନାଳର ମହିମା ଗାଦିଠାରେ। ମୋର ବାପା ଜଣେ ସ୍ୱାଧୀନତା ସଂଗ୍ରାମୀ, କବି ଓ ସମାଜସେବୀ ଥିଲେ।

ମୋ ବାପାଙ୍କ ପିଉସୀ ପୁଅ ଭାଇ ଚକ୍ରଧର ନାୟକ (ଅଗଣି) ଚଳାଉଥିବା ଚାଟଶାଳୀରେ ପାଞ୍ଚବର୍ଷ ବୟସରେ ମୋର ନାଁ ଲେଖାଇ ଦିଆଗଲା। ମୁଁ ସେଠାରେ ଦୁଇବର୍ଷ ପଢ଼ିବା ପରେ ଯୋରନ୍ଦା ନିମ୍ନ ପ୍ରାଥମିକ ବିଦ୍ୟାଳୟରେ ଆସି ଦ୍ୱିତୀୟ ଶ୍ରେଣୀରେ ନାମ ଲେଖାଇଲି ୧୯୫୩ ମସିହାରେ। ଦ୍ୱିତୀୟ ଶ୍ରେଣୀରେ ଦୁଇବର୍ଷ ରହିଗଲି। ଏହାପରେ ଯୋରନ୍ଦା ମଧ୍ୟ ଇଂରାଜୀ ସ୍କୁଲରେ ଚତୁର୍ଥ ଶ୍ରେଣୀରେ ମୋର ନାମ ଲେଖାହେଲା ୧୯୫୬ ମସିହାରେ। ୧୯୬୦ରେ ମାଇନର ପାସ୍ କରି ଯୋରନ୍ଦା ହାଇସ୍କୁଲରେ ଅଷ୍ଟମ ଶ୍ରେଣୀରେ ନାମ ଲେଖାଇ ସଂସ୍କୃତ ଅତିରିକ୍ତ ବିଷୟ ନେଇ ୧୯୬୪ରେ ମାଟ୍ରିକ୍ ପାସ୍ କଲି ଦ୍ୱିତୀୟ ଶ୍ରେଣୀରେ।

ଏହାପରେ ମୁଁ ଜନ୍ମସ୍ଥାନ ତ୍ୟାଗ କଲି ଉଚ୍ଚଶିକ୍ଷା ଓ କର୍ମ ଅନ୍ୱେଷଣରେ। ଢେଙ୍କାନାଳ, କଟକ ଦେଇ ବର୍ତ୍ତମାନ ଭୁବନେଶ୍ୱରଠାରେ ସ୍ଥାୟୀ ବାସିନ୍ଦା ଭାବରେ ଅବସ୍ଥାପିତ। ମୋ ବାପା ବୋଉଙ୍କର ଆମେ ତିନିପୁଅ ଓ ପାଞ୍ଚ ଝିଅ। ମୁଁ ଜ୍ୟେଷ୍ଠ ସନ୍ତାନ ତଥା ଜ୍ୟେଷ୍ଠ ପୁତ୍ର ମୋ ସାରା ପରିବାରର। ମୋର ଦୁଇ ଦାଦାଙ୍କ ପରିବାରର ବି ମୁଁ ଜ୍ୟେଷ୍ଠ ସନ୍ତାନ। ୧୯୭୧ ମସିହା ଅକ୍ଷୟ ତୃତୀୟା ତିଥିରେ (୨୭.୦୪.୧୯୭୧)

ମୋର ବିବାହ କାର୍ଯ୍ୟ ସମ୍ପନ୍ନ ହେଲା 'ବିଜୟଲକ୍ଷ୍ମୀ'ଙ୍କ ସହ। ପରେ ସେ ହେଲେ ଶିକ୍ଷୟିତ୍ରୀ। ମୋର ଦୁଇ କନିଷ୍ଠ ଭାଇ ହେଲେ ମାଧବଚରଣ ନାୟକ ଓ ମନୋଜ କୁମାର ନାୟକ। ମୋର କନିଷ୍ଠା ଭଗ୍ନୀମାନେ ହେଲେ ମନୋରମା, ଉମାରାଣୀ, ଅଞ୍ଜଳୀ, ସରୋଜିନୀ ଓ ସୁନନ୍ଦା।

ମୋର ପାଞ୍ଚକନ୍ୟା। ସମସ୍ତେ ବିବାହିତା। ସେମାନେ ହେଲେ ନନ୍ଦିନୀ(ମାମା), କାଦମ୍ବିନୀ(ଲୀନା), ରୋଜାଲିନ୍(ରିନୁ), ମୋନାଲିସା(ଇତୁ) ଓ ଅଭିଲିପ୍ସା(ସୋନି)। ଜ୍ୱାଇଁମାନେ ଯଥାକ୍ରମେ ଚନ୍ଦ୍ରକାନ୍ତ (ନୌବିଭାଗ ଯନ୍ତ୍ରୀ), ଅଶୋକ (ଟାଟା ମାଇନିଂ ଯନ୍ତ୍ରୀ), ଅନୀଲ (ବ୍ୟବସାୟୀ), ସମ୍ବିତ (ଆଇଟି ମ୍ୟାନେଜର) ସତ୍ୟରଞ୍ଜନ (ସଫ୍ଟୱେର ଯନ୍ତ୍ରୀ)।

## ସଂକ୍ଷେପରେ ଡକ୍ଟର ଉଦ୍ଧବ ଚରଣ ନାୟକ

**ପିତାଙ୍କ ନାମ:** ସ୍ୱର୍ଗତ ଅନନ୍ତ ଚରଣ ନାୟକ

**ମାତାଙ୍କ ନାମ:** ସ୍ୱର୍ଗୀୟା ସୁକୁମାରୀ ନାୟକ

**ଜନ୍ମସ୍ଥାନ:** ନାଟିମା (ମହିମାଗାଦି), ମହିମାଗାଦି-୭୫୯୦୧୪, ଜି: ଢେଙ୍କାନାଳ (ଓଡ଼ିଶା)

**ଜନ୍ମ ତାରିଖ:** ୧୭.୬.୧୯୪୬ (ବସୁମତିସ୍ନାନ ଦିବସ)

**ବର୍ତ୍ତମାନର ଠିକଣା:** ସାଇ ଦିଗ୍‌ବଳୟ, ଇ-୧୯୨, ଓଡ଼ିଶା ରାଜ୍ୟ ଗୃହ ନିର୍ମାଣ ସଂସ୍ଥା କଲୋନି, ବରମୁଣ୍ଡା, ଭୁବନେଶ୍ୱର-୭୫୧୦୦୩, ଓଡ଼ିଶା

**ଦୂରଭାଷ:** ୦୬୭୪-୨୩୫୪୩୩୮, ମୋ: ୯୪୩୮୨୯୯୧୭୪, ୯୦୪୦୧୦୫୦୮୩

**ଇ-ମେଲ:** uddhab.nayak@rediffmail.com

**ଶିକ୍ଷା:** ଏମ୍.ଏ. (ଲୋକ ପ୍ରଶାସନ) ଉତ୍କଳ ବିଶ୍ୱ ବିଦ୍ୟାଳୟ,
ପିଏଚ୍.ଡି. (ଓଡ଼ିଆ) ମହିମାଧର୍ମର ଇତିବୃତ୍ତ ଓ ସାହିତ୍ୟ,
ଉତ୍କଳ ବିଶ୍ୱବିଦ୍ୟାଳୟ

**ବୃତ୍ତିଗତ ଯୋଗ୍ୟତା:** ସାକ୍ଷରତା କାର୍ଯ୍ୟକ୍ରମର ଜାତୀୟ ସ୍ତରୀୟ ତାଲିମଦାତା ଓ ସଂସାଧକ (Resource Person) ଭାବରେ ଆଡ୍‌ମିନ୍‌ଷ୍ଟ୍ରେଟିଭ ଇନ୍‌ଷ୍ଟିଚ୍ୟୁଟ୍, ମହୀଶୂର; ସାକ୍ଷରତା ଭବନ- ଲକ୍ଷ୍ନୌ (ଉତ୍ତରପ୍ରଦେଶ), ଭାରତୀୟ ଶିକ୍ଷାନୁଷ୍ଠାନ (IIE) ପୁନେ (ମହାରାଷ୍ଟ୍ର); ଭରତିଆର ବିଶ୍ୱବିଦ୍ୟାଳୟ, କୋଇମ୍ବାଟୁର (ତାମିଲନାଡୁ); ପଞ୍ଜାବ

ବିଶ୍ୱବିଦ୍ୟାଳୟ, ଚଣ୍ଡିଗଡ଼ (ପଞ୍ଜାବ); ରାଜ୍ୟ ଜନଶିକ୍ଷା ସାଧନ କେନ୍ଦ୍ର, ଇନ୍ଦୋର (ମଧ୍ୟପ୍ରଦେଶ); ରାଜ୍ୟ ଜନଶିକ୍ଷା ସାଧନ କେନ୍ଦ୍ର, ଜୟପୁର (ରାଜସ୍ଥାନ) ଠାରେ ତାଲିମପ୍ରାପ୍ତ। ଏ ସମସ୍ତ ତାଲିମ କାର୍ଯ୍ୟକ୍ରମର ଆୟୋଜକ ଥିଲେ ଭାରତ ସରକାରଙ୍କ ମାନବ ସମ୍ବଳ ବିକାଶ ମନ୍ତ୍ରଣାଳୟ ଅଧିନସ୍ଥ ଜାତୀୟ ସାକ୍ଷରତା ମିଶନ ଓ ପ୍ରୌଢ଼ଶିକ୍ଷା ନିର୍ଦ୍ଦେଶାଳୟ, ନୂଆଦିଲ୍ଲୀ। ନୂଆଦିଲ୍ଲୀଠାରେ ବିଶ୍ୱ ଯୁବ କେନ୍ଦ୍ର ଦ୍ୱାରା ଅନୁଷ୍ଠିତ 'ଏନ୍‌ଭାରମେଣ୍ଟାଲ ଏଡୁକେସନ'ରେ ତାଲିମପ୍ରାପ୍ତ (୧୯୯୬)।

**କର୍ମ ଓ ବୃତ୍ତି:** ଶିକ୍ଷାବିତ୍, ସାହିତ୍ୟ ସେବୀ, ସମାଜସେବୀ, ଭାରତୀୟ ସଂସ୍କୃତି ବିଷୟକ ଗବେଷକ, ଲୋକ ସଂସ୍କୃତିବିତ୍, ପରିବେଶ ବିଜ୍ଞାନୀ, ଶିଶୁ ସାହିତ୍ୟ ଲେଖକ, ଜନଶିକ୍ଷା ସାହିତ୍ୟକାର, ସାକ୍ଷରତା ବିଶେଷଜ୍ଞ

**ବୃତ୍ତିଗତ ଜୀବନ**

**ନିର୍ଦ୍ଦେଶକ,** ରାଜ୍ୟ ଜନଶିକ୍ଷା ସାଧନ କେନ୍ଦ୍ର- ରାୟଗଡ଼ା, ୧.୪.୨୦୧୨-୧୫.୧୨.୨୦୧୨

**କାର୍ଯ୍ୟକ୍ରମ ସଂଯୋଜକ-** (ପୁସ୍ତକ ପ୍ରକାଶନ ଓ ତାଲିମ)- ରାଜ୍ୟ ଜନଶିକ୍ଷା ସାଧନ କେନ୍ଦ୍ର ଓଡ଼ିଶା ଭୁବନେଶ୍ୱର- ୧୭.୦୫.୧୯୯୦ରୁ ୩୦.୦୬.୧୯୯୯

**ପ୍ରଶାସନିକ କାର୍ଯ୍ୟାଧିକାରୀ:**

ପଠାଣି ସାମନ୍ତ ପ୍ଲାନେଟୋରିଅମ୍

ଓଡ଼ିଶା ସୁଦୂର ପର୍ଯ୍ୟବେକ୍ଷଣ ଉପଯୋଗ କେନ୍ଦ୍ର

ରାଜ୍ୟ ମୃତ୍ତିକା ସଂରକ୍ଷଣ ବିଭାଗ

## ପ୍ରକାଶିତ ପୁସ୍ତକ

### ଧର୍ମ ସଂସ୍କୃତି

**ମହିମାଧର୍ମ ବିଶ୍ୱ ଇତିହାସ (୧୯୮୦, ୧୯୮୫, ୨୦୦୮)**

An Introduction to Mahima Religion (୧୯୮୩)

ଭାରତୀୟ ହିନ୍ଦୁ ଗୃହସ୍ଥଧର୍ମ (୧୯୮୦)

ଭାରତୀୟ ହିନ୍ଦୁ ନାରୀର କର୍ତ୍ତବ୍ୟ ଓ ଆଦର୍ଶ (୧୯୮୩)

ଜ୍ଞାନ ଓ ଚେତନା (୧୯୭୭)

ମହିମାଧର୍ମ ଓ ସନ୍ନ୍ୟାସୀ ମହାନ୍ଦ୍ର ବାବା (୧୯୭୮)
ସିଦ୍ଧ ବଡ଼କୃପାସିନ୍ଧୁ ବାବା (୧୯୮୨, ୨୦୦୨)
ଶ୍ରୀଧର ଗୋସ୍ୱାମୀଙ୍କ ସିଦ୍ଧ ଚନ୍ଦ୍ରିକା (ସଂ)- ୧୯୮୦
ଭଗବତୀ କଥା (ଅନୁବାଦ)- (ଷୋଡ଼ଶ ଖଣ୍ଡ) (୧୯୮୨)
ମହିମାଧର୍ମ ଓ ବିଶ୍ୱକବି ଭୀମଭୋଇ (୨୦୦୪)
**ସନ୍ଥକବି ଭୀମଭୋଇ ଗ୍ରନ୍ଥାବଳୀ (୨୦୧୩)**
ଭକ୍ତବସ୍ଥଳ ଶ୍ରୀଜଗନ୍ନାଥ (୨୦୧୬)

## ବିବିଧ

**ଓଡ଼ିଶା ରାଜନୀତିର ଇତିହାସ (୨୦୧୩, ୨୦୧୪)**

## ଜୀବନୀ

ବିଶ୍ୱର ଶ୍ରେଷ୍ଠ ଜନପ୍ରିୟ ମହିଳା ଇନ୍ଦିରା ପ୍ରିୟଦର୍ଶିନୀ (୧୯୮୪, ୧୯୯୫)
କବି ବ୍ରଜନାଥ ବଡ଼ଜେନା ଜୀବନୀ ଓ ସାହିତ୍ୟ (୧୯୭୮)
ଉତ୍କଳ ପ୍ରତିଭା (୧୬ ଜଣ ବିଶିଷ୍ଟ ବ୍ୟକ୍ତିଙ୍କ ଜୀବନୀ) (୨୦୦୪)
ଉତ୍କଳର ବରପୁତ୍ର( ୧୬ଜଣ ପ୍ରତିଥଯଶା ଓଡ଼ିଶା ବରପୁତ୍ରଙ୍କ ଜୀବନୀ) (୨୦୧୨)

## ଶିଶୁ ସାହିତ୍ୟ (ଗଳ୍ପ)

ଆଧୁନିକ ପକେଟ ଦୁନିଆ (ସାଧାରଣ ଜ୍ଞାନ ପୁସ୍ତକ) (୧୯୭୭)
ମଜା ଓ ଆନନ୍ଦ କାହାଣୀମାଳା (୧୯୮୨, ୧୯୮୫ ଓ ୧୯୯୬)
ଗୁରୁଶିଷ୍ୟ କଥାମାଳା (୧୯୯୩)
ମଧୁବାବୁଙ୍କ ବୁଦ୍ଧିକଥା (୧୯୯୩)
ଶକୁନ୍ତଳା (୧୯୯୩)
ସରସ କଥାମାଳା (୧୯୯୬)
ଭଲ ଭଲ ଗପ (୨୦୦୨)
ଆଲିବାବା କଥା (୨୦୦୨)
ମହାଭାରତର ନୀତିକଥା (୨୦୦୨)

ହୁଁ ମାରୁଥା, ଗପ ଶୁଣୁଥା (୨୦୦୨)
ସରସ କାହାଣୀ (୨୦୦୮)
ବାପୁଙ୍କ ଜୀବନର ମଜାମଜା କଥା (୨୦୦୭)
ବୁଦ୍ଧ କଥା (୨୦୧୫)
ଅଦୃଶ୍ୟ ରାକ୍ଷସ (ପରିବେଶ କାହାଣୀ) (୧୯୯୩)

## ଶିଶୁ ସାହିତ୍ୟ (ଜୀବନୀ)

ଗଡ଼ଜାତ ଗାନ୍ଧି ସାରଙ୍ଗଧର ଦାସ (୧୯୯୩)
ଆମ ସନ୍ଥକବି ଭୀମଭୋଇ (୧୯୯୩)
**ପଠାଣି ସାଆନ୍ତ (୧୯୯୬) (ଓଡ଼ିଶା ବିଜ୍ଞାନ ଏକାଡେମୀ ପୁରସ୍କାରପ୍ରାପ୍ତ)**
କବିରାଜ ଜୟଦେବ (୧୯୯୮)
ସହୀଦ ଲକ୍ଷ୍ମଣ ନାୟକ (୧୯୯୭)
ଆଜୀବନ ସଂଗ୍ରାମୀ ଯଦୁମଣି ମଙ୍ଗରାଜ (୧୯୯୮)
ବିପ୍ଳବୀ ବାଘା ଯତୀନ (୧୯୯୩)
ବିପ୍ଳବୀ ବୀର ବୈଷ୍ଣବ ପଟ୍ଟନାୟକ (୨୦୦୧)
ପିଲାଙ୍କ ସାଇଲୀଳା (୨୦୧୪)
ଆମ ବାଜି ରାଉତ (୨୦୧୬)
ସହୀଦ ଲକ୍ଷ୍ମଣ ନାୟକ (ହିନ୍ଦୀ) (୧୯୯୭)

## ଜନଶିକ୍ଷା ସାହିତ୍ୟ (ସାକ୍ଷରତା ପରବର୍ତ୍ତୀ ପୁସ୍ତକ)

ଅଧିକ ରୋଜଗାରର ବାଟ (୧୯୯୦)
ଆମ ଓଡ଼ିଶାର ଢଗଢମାଳି (୧୯୯୭)
ମାଟି ଆମର ମା' (୧୯୯୦-୧୯୯୮)
ଗୁରୁଦକ୍ଷିଣା (ଅନୁ) (୧୯୯୨-୧୯୯୮)
ନ୍ୟାୟ ମନ୍ଦିର (ଅନୁ) (୧୯୯୨)
ପାଗଳ ମରଣ ବା ଜଳାତଙ୍କ (୧୯୯୪) N.B.T. , ନୂଆଦିଲ୍ଲୀ ପ୍ରକାଶନ
ସାଗର ଧନ (୧୯୯୭) N.B.T. , ନୂଆଦିଲ୍ଲୀ ପ୍ରକାଶନ
ହକ୍ (ହିନ୍ଦୀ)- ୧୯୯୭, ରାଜ୍ୟ ଜନଶିକ୍ଷା ସାଧନକେନ୍ଦ୍ର, ନୂଆଦିଲ୍ଲୀ ପ୍ରକାଶିତ

## ସାକ୍ଷରତା ସହାୟକ ପୁସ୍ତକ

ସାକ୍ଷରତା ପରବର୍ତ୍ତୀ ପୁସ୍ତକ ପ୍ରଣୟନ ନିର୍ଦ୍ଦେଶିକା (ଅନୁବାଦ)

ସ୍ୱେଚ୍ଛାସେବୀ ସହାୟକ ନିର୍ଦ୍ଦେଶିକା

ଦୀପାୟନ (ଛାତ୍ରଛାତ୍ରୀମାନଙ୍କ ପାଇଁ ସାକ୍ଷରତା ନିର୍ଦ୍ଦେଶିକା)

ବନ୍ୟା ବାତ୍ୟା ପାଇଁ ଗୋଷ୍ଠୀ ସୁରକ୍ଷା ଯୋଜନା- ଓ.ଏସ୍.ଡି.ଏମ୍. ଓ ମିଳିତ ଜାତିସଂଘ ପ୍ରକାଶିତ, ଓଡ଼ିଆ ଅନୁବାଦ (୨୦୦୨)

ବହୁମୁଖୀ ବାତ୍ୟା ଆଶ୍ରୟସ୍ଥଳୀ- (୨୦୦୨) ଓଡ଼ିଶା ରାଜ୍ୟ ବିପର୍ଯ୍ୟୟ ପ୍ରଶମନ କର୍ତ୍ତୃପକ୍ଷ ପ୍ରକାଶିତ

## ସାକ୍ଷରତା ପାଇଁ ପ୍ରାଥମିକ ପୁସ୍ତକ

ଆମ କଥା (୧ମ, ୨ୟ, ୩ୟ) ମିଳିତ ଲେଖକ

ଆମ କଥା (୪ର୍ଥ) ସାକ୍ଷରତା ପରବର୍ତ୍ତୀ ପ୍ରାଥମିକ ପୁସ୍ତକ (ସମ୍ପୂର୍ଣ୍ଣ ସମ୍ପାଦନା)

## ବିଭିନ୍ନ ମର୍ଯ୍ୟାଦାପୂର୍ଣ୍ଣ ସଂକଳନରେ ପ୍ରକାଶିତ ଗବେଷଣାତ୍ମକ ପ୍ରବନ୍ଧ

| | |
|---|---|
| ୧. ଓଡ଼ିଶାର ଓଷା ବ୍ରତ, ପୁନେଇ ପରବ ଓ ଯାନିଯାତ୍ରା (୧୯୮୦) | ଉତ୍କଳ ପାଠକ ସଂସଦ |
| ୨. ଓଡ଼ିଶାର ଦେବାଦେବୀ (୧୯୮୧) | ଉତ୍କଳ ପାଠକ ସଂସଦ |
| ୩. ଓଡ଼ିଶାର ସାଧୁସନ୍ଥ (୧୯୮୩) | ଉତ୍କଳ ପାଠକ ସଂସଦ |
| ୪. ଓଡ଼ିଶାର ଭକ୍ତ କବି (୧୯୮୪) | ଉତ୍କଳ ପାଠକ ସଂସଦ |
| ୫. ଏକାମ୍ର କ୍ଷେତ୍ର (୧୯୯୩) | ଉତ୍କଳ ପାଠକ ସଂସଦ |
| ୬. ସାହିତ୍ୟ ଓ ସଂସ୍କୃତି (୧୯୯୨) | କେଦାରନାଥ ଗବେଷଣା ପ୍ରତିଷ୍ଠାନ, ଭୁବନେଶ୍ୱର |

୭. ବିଶ୍ୱ ଓଡ଼ିଆ ସମ୍ମିଳନୀ ସ୍ମାରକୀ ଗ୍ରନ୍ଥ (୧୯୯୨)

୮. ଶିଶୁ ଅନନ୍ତ ପରିକ୍ରମା (୧୯୯୫)

୯. କୋଣାର୍କ (ଭୀମଭୋଇ ବିଶେଷାଙ୍କ) (୧୯୯୬) ଓଡ଼ିଶା ସାହିତ୍ୟ ଏକାଡେମୀ

୧୦. କୋଣାର୍କ (ଜୁଲାଇ ୧୯୯୮ ସଂଖ୍ୟା) ଓଡ଼ିଶା ସାହିତ୍ୟ ଏକାଡେମୀ

୧୧. ଜଗନ୍ନାଥ ପାଣି ପରିକ୍ରମା(୧୯୯୫) ଜଗନ୍ନାଥ ପାଣି ସଂସ୍କୃତି ସଂସଦ, ଭୁବନେଶ୍ୱର

୧୨. ସନ୍ଥକବି ଭୀମଭୋଇ (୧୯୯୭) ସାରଳା ସାହିତ୍ୟ ସଂସଦ କର୍ତ୍ତୃକ ସଂକଳିତ ଓ ପ୍ରକାଶିତ

୧୩. ସନ୍ଥକବି ଭୀମଭୋଇ (୨୦୧୧) କଣ୍ଟାକଟ ପଏଣ୍ଟ, କର୍ତ୍ତୃକ ସଂକଳିତ ଓ ପ୍ରକାଶିତ ବିଡ଼ାନାସୀ, କଟକ-୭୫୩୦୧୪

୧୪. ସନ୍ଥବୋଧ ଓ କବି ଭୀମଭୋଇ (୨୦୧୧) ଜିଲ୍ଲା ସଂସ୍କୃତି ପରିଷଦ, ସୁବର୍ଣ୍ଣପୁର, କର୍ତ୍ତୃକ ସଂକଳିତ ଓ ପ୍ରକାଶିତ

୧୫. ବାଜି ରାଉତ ସ୍ମରଣିକା (୧୯୯୭) ଉତ୍କଳ ନବଜୀବନ ମଣ୍ଡଳ, ଅନୁଗୋଳ

୧୬. Studies in Mahima Dharma & Minor Religious Cults of Eastern India (1998) Institute of Orissan Culture, Bhubaneswar.

୧୭. Prachya Vidya 2010- Academy of Yoga and Oriental studies, Bhubaneswar

୧୮. ଚନ୍ଦ୍ରଭାଗା-ସ୍ମରଣିକା (୨୦୧୦) ଉତ୍କଳିକା, କୋଚିନ୍ ଓଡ଼ିଆ ଆସୋସିଏସନ୍ (କେରଳ)

୧୯. ନେହରୁ ଯୁବ ପ୍ରତିଷ୍ଠାନ, ଭୁବନେଶ୍ୱର ଦ୍ୱାରା ବିଭିନ୍ନ ବର୍ଷର ସ୍ମରଣିକାରେ ଉଚ୍ଚକୋଟୀର ଲେଖାମାନ ପ୍ରକାଶ ପାଏ

୨୦. ଦାଶରଥି ପଟ୍ଟନାୟକ 'ସ୍ମାରକୀ ଗ୍ରନ୍ଥ'

**ଅନୁବାଦ:** ବିଶିଷ୍ଟ ସ୍ୱାଧୀନତା ସଂଗ୍ରାମୀ, ରାଜନେତା ଓ ପ୍ରାବନ୍ଧିକ ଶ୍ରୀମନ୍ନାରାୟଣଙ୍କର ଚାରିଗୋଟି ମନନଶୀଳ ପ୍ରବନ୍ଧ, ଚକ୍ରବର୍ତ୍ତୀ ରାଜଗୋପାଳଚାରୀଙ୍କର ପାଞ୍ଚଗୋଟି ମନନଶୀଳ ଗଳ୍ପ ଓ ଖଲିଲ ଜୀବ୍ରାଁଙ୍କର କୋଡ଼ିଏରୁ ଊର୍ଦ୍ଧ୍ୱ ଗଳ୍ପର ଅନୁବାଦକ। ଏ ସମସ୍ତ ବିଭିନ୍ନ ପତ୍ରପତ୍ରିକାରେ ପ୍ରକାଶିତ।

**ସମ୍ପାଦନା:** ଓଡ଼ିଆ ଲେଖକ ଲେଖିକା ପରିଷଦ କର୍ତ୍ତକ **'ବନ୍ଧୁ ପ୍ରବନ୍ଧ'** ସଂକଳନର **ସମ୍ପାଦକ**, ପାକ୍ଷିକ ସାହିତ୍ୟ, ସଂସ୍କୃତି ଓ ସାମାଜିକ ଚେତନା ପତ୍ରିକା **'ସଂହତି'**ର **ମୁଖ୍ୟ ସମ୍ପାଦକ**, ମାସିକ ସାହିତ୍ୟ ଓ ସଂସ୍କୃତି ପତ୍ରିକା **'ଫାଲ୍‌ଗୁନି'**ର **କାର୍ଯ୍ୟନିର୍ବାହୀ ସମ୍ପାଦକ** (ବର୍ତ୍ତମାନ ବନ୍ଦ), ଶିଶୁ ସାହିତ୍ୟ ପତ୍ରିକା **'ସାନୁମାନୁଙ୍କ କଣ୍ଢେଇ'**ର **ସମ୍ପାଦକ** (ବର୍ତ୍ତମାନ ବନ୍ଦ), ଦ୍ୱିମାସିକ ଧର୍ମ ଓ ସଂସ୍କୃତିମୂଳକ ପତ୍ରିକା **'ମହିମା ଆଲୋକ'**ର **ସମ୍ପାଦକ** (ବର୍ତ୍ତମାନ ବନ୍ଦ), ଦ୍ୱିମାସିକ ସାହିତ୍ୟ ପତ୍ରିକା **'ତରଙ୍ଗ'**ର **ସମ୍ପାଦକ** (ବର୍ତ୍ତମାନ ବନ୍ଦ)।

## ପତ୍ରପତ୍ରିକାରେ ଲେଖା ପ୍ରକାଶ

- ସମାଜ, ସମ୍ବାଦ, ପ୍ରଜାତନ୍ତ୍ର, ସମୟ, ପ୍ରଗତିବାଦୀ, ଧରିତ୍ରୀ, ଖବର, ପ୍ରମେୟ, ଓଡ଼ିଶା ଭାସ୍କର, ସୂର୍ଯ୍ୟପ୍ରଭା ଓ ନିତିଦିନ ଆଦିରେ ଲେଖା ପ୍ରକାଶ ପାଏ।
- ଆସନ୍ତାକାଲି, ନବରବି, ଶ୍ୱେତ ସଂକେତ, ପୌରୁଷ, ସମାରୋହ, ପ୍ରତିଭା, ଧାରା, ଯୋଜନା (ଓଡ଼ିଆ), ଉତ୍କଳ ପ୍ରସଙ୍ଗ, ସାଗରିକା, ଯୁଗଶ୍ରୀ ଯୁଗନାରୀ ଓ ବର୍ଣ୍ଣ ବିତାନ ଆଦିରେ ବିଶେଷ ପ୍ରବନ୍ଧ, ଗଳ୍ପ ଓ ସମାଲୋଚନା ଓ ଅନୁବାଦ ଲେଖାମାନ ପ୍ରକାଶ ପାଏ।
- ମୀନାବଜାର, ମନପବନ, ସଂସାର, ନନ୍ଦନକାନନ, ଝୁମୁକା, ଆମ ପରଶମଣି ଆଦି ଶିଶୁ ସାହିତ୍ୟ ପତ୍ରିକା ଓ ସମାଜ, ପ୍ରଜାତନ୍ତ୍ର, ଧରିତ୍ରୀ, ସମ୍ବାଦ, ସମୟ ଆଦିରେ ଥିବା ଶିଶୁ ସାହିତ୍ୟ ବିଭାଗରେ ନିୟମିତ ଲେଖକ।

## ସମ୍ମାନ ଓ ସମ୍ବର୍ଦ୍ଧନା

### ପ୍ରବନ୍ଧ, ସମାଲୋଚନା ଓ ସାମଗ୍ରୀକ କୃତି ପାଇଁ

୧. ପଶ୍ଚିମ ଓଡ଼ିଶା ସାରସ୍ୱତ କଂଗ୍ରେସ, ଟିଟିଲାଗଡ଼ ଦ୍ୱାରା ସମ୍ମାନିତ (୧୯୮୬)
୨. କବିଭୂଷଣ ରାଜକିଶୋର ପଟ୍ଟନାୟକଙ୍କ ଜନ୍ମଶତବାର୍ଷିକ ଉତ୍ସବ (ଢେଙ୍କାନାଳ) ଉପଲକ୍ଷେ- '**କବିଭୂଷଣ**' ସମ୍ମାନ (୨୦୦୨)
୩. '**ଶ୍ୱେତସଂକେତ ପ୍ରତିଭା**' ସମ୍ମାନ (ପ୍ରବନ୍ଧ ପାଇଁ) (୨୦୦୯)
୪. ଭୀମଭୋଇ ସମାଧି ଟ୍ରଷ୍ଟ କର୍ତ୍ତୃକ '**ଭୀମଭୋଇ ସମ୍ମାନ**' (୨୦୧୦)
୫. ନଟରାଜ କୁମାର ଉତ୍ସବ ଢେଙ୍କାନାଳ କର୍ତ୍ତୃକ '**ନଟରାଜ ସାହିତ୍ୟ ସମ୍ମାନ**' (୨୦୧୧)
୬. ବିଭାବନା କର୍ତ୍ତୃକ '**ଦୀନକୃଷ୍ଣ ସମ୍ମାନ**' (୨୦୧୨)
୭. ଅଖିଳ ଭାରତ ଓଡ଼ିଆ ସାହିତ୍ୟ ପରିଷଦ '**ସାରସ୍ୱତ ସମ୍ମାନ**'- ୨୦୧୨
୮. ବିଶ୍ୱ ପ୍ରସିଦ୍ଧ ମହିମାଧର୍ମ ଗବେଷଣା ପରିଷଦ ଚାରିଟେବୁଲ ଟ୍ରଷ୍ଟ କର୍ତ୍ତୃକ '**ମହିମା ଗୌରବ ସମ୍ମାନ**' (୨୦୧୪)
୯. ମା' ମାଟିର ସମ୍ମାନ, '**ଗଁଦିଆ ଗୌରବ**' ସମ୍ମାନ (୨୦୧୪)
୧୦. ପରଶମଣି, ବାରିପଦା- **ପ୍ରବନ୍ଧ ସମ୍ମାନ** (୨୦୧୨)

## ଶିଶୁ ସାହିତ୍ୟ ପାଇଁ

୧. **କଣ୍ଢେଇ ସମ୍ମାନ** (୧୯୯୩)

୨. ରାଜ୍ୟସ୍ତରୀୟ ଡ. ହରେକୃଷ୍ଣ ମହତାବ ଜୟନ୍ତୀ ଉପଲକ୍ଷେ **'ଶିଶୁ ସାହିତ୍ୟ ସମ୍ମାନ'** (୧୯୯୩)

୩. ଶ୍ରୀକ୍ଷେତ୍ର ଶିଶୁ ସାହିତ୍ୟ ସଂସଦ, ପୁରୀ ଦ୍ୱାରା ସମ୍ମାନିତ (୧୯୯୬)

୪. **ଓଡ଼ିଶା ବିଜ୍ଞାନ ଏକାଡେମୀ ପୁରସ୍କାର** (ଜନପ୍ରିୟ ବିଜ୍ଞାନ ପୁସ୍ତକ ଶିଶୁ ବିଭାଗ ପାଇଁ) (୧୯୯୬)

୫. ପ୍ରଜାତନ୍ତ୍ର ପ୍ରଚାର ସମିତିର ୫୭ ବିଷୁବ ମିଳନ ଉତ୍ସବରେ **'ମୀନାବଜାର ଶିଶୁ ସାହିତ୍ୟ ପୁରସ୍କାର ଓ ସମ୍ମାନ'** (୨୦୦୭)

୬. ମାଣିକ ବିଶ୍ୱନାଥ ସ୍ମୃତିନ୍ୟାସ ଦ୍ୱାରା **'ଶିଶୁସାହିତ୍ୟ ପୁରସ୍କାର ଓ ସମ୍ମାନ'** (୨୦୦୭)

୭. ଝୁମୁକା ରୌପ୍ୟ ଜୟନ୍ତୀ ସମାରୋହ- ୨୦୧୧ରେ ସମ୍ମାନିତ

୮. ଶିଶୁ ସାହିତ୍ୟ ଲେଖକ ସମ୍ମିଳନୀ, ଓଡ଼ିଶା କର୍ତ୍ତୃକ **'ଜୟକୃଷ୍ଣ ସାହୁ ଶିଶୁ ସାହିତ୍ୟ ସମ୍ମାନ'** (୨୦୧୩)

୯. **ଝୁମୁକା ଶିଶୁ ସାହିତ୍ୟ ସମ୍ମାନ** (୨୦୧୩)

## ସେମିନାର ଓ କର୍ମଶାଳାରେ ଯୋଗଦାନ ଓ ପ୍ରବନ୍ଧ ଉପସ୍ଥାପନ

୧. ନ୍ୟାସ୍‌ନାଲ ସେମିନର ଅନ୍ ମହିମା ଧର୍ମ ଆଣ୍ଡ ମାଇନର ରେଲିଜିଅସ୍ କଲ୍‌ଟସ୍ (National Seminar on Mahima Dharma and Minor Religious Cults)

ସ୍ଥାନ: ଭୁବନେଶ୍ୱର

ତାରିଖ: ୦୯-୧୦ ଡିସେମ୍ବର ୧୯୯୫

ପ୍ରବନ୍ଧ ଉପସ୍ଥାପନା: Impact of Mahima Dharma in Eastern India

୨. ଅଖିଳ ଭାରତ ଶିଶୁ ସାହିତ୍ୟ ସମ୍ମିଳନୀର ୨୩ତମ ଜାତୀୟ ଉତ୍ସବ-୧୯୯୭

**ସ୍ଥାନ:** ଭୁବନେଶ୍ୱର

**ପ୍ରବନ୍ଧ ଉପସ୍ଥାପନା:** Designing Journal for Children

୩. ଅଲ୍ ଇଣ୍ଡିଆ ଓରିଏଣ୍ଟାଲ କନ୍‌ଫରେନ୍ସ ୪୧ତମ ଅଧିବେଶନ- ୨୦୦୨
**ସ୍ଥାନ:** ଶ୍ରୀଜଗନ୍ନାଥ ସଂସ୍କୃତ ବିଶ୍ୱବିଦ୍ୟାଳୟ, ପୁରୀ
**ପ୍ରବନ୍ଧ ଉପସ୍ଥାପନା: ମହିମା ରେଲିଜିଅନ୍ ଇନ୍ ଓଡ଼ିଶା**

୪. ନ୍ୟାସନାଲ ୱାର୍କସପ୍ ଫର୍ ପ୍ରିପାରେସନ୍ ଅଫ୍ ଲିଗାଲ ଲିଟେରସି ମ୍ୟାଟେରିଆଲ୍: ଫର୍ ନିଓ ଲିଟରେଟସ୍ (ଦିଲ୍ଲୀ ରାଜ୍ୟ ଜନଶିକ୍ଷା ସାଧନ କେନ୍ଦ୍ର ଓ ନୂଆଦିଲ୍ଲୀ ୱାଇଏମ୍‌ସିଏର ମିଳିତ ତତ୍ତ୍ୱାବଧାନରେ ଅନୁଷ୍ଠିତ): ଏହାର ଅଧକ୍ଷ ପଦବିରେ ଅଧିଷ୍ଠିତ, Preparation of Legal literacy Materials in Odisha ଶୀର୍ଷକ ପ୍ରବନ୍ଧ ଉପସ୍ଥାପକ

୫. ଏସିଆ ମହାଦେଶ ଓ ପ୍ରଶାନ୍ତ ମହାସାଗରୀୟ ଦେଶମାନଙ୍କ ନିମନ୍ତେ ସାକ୍ଷରତା ପରବର୍ତ୍ତୀ ପୁସ୍ତକ ପ୍ରଣୟନର ଆନ୍ତର୍ଜାତିକ କର୍ମଶାଳା, ଏସିଆ ପାସିଫିକ୍ ସାଂସ୍କୃତିକ କେନ୍ଦ୍ର, ୟୁନେସ୍କୋ ଓ ଭାରତ ସରକାରଙ୍କ ମାନବ ସମ୍ବଳ ବିକାଶ ମନ୍ତ୍ରଣାଳୟ ଅନ୍ତର୍ଗତ ଶିକ୍ଷା ବିଭାଗର ମିଳିତ ତତ୍ତ୍ୱାବଧାନରେ ୧୯୯୬ ମସିହାରେ ଭୁବନେଶ୍ୱରଠାରେ ଅନୁଷ୍ଠିତ ଏହି କର୍ମଶାଳାର କ୍ଷେତ୍ର ସଂଯୋଜକ ଦାୟିତ୍ୱ ବହନ କରିବାର ଗୌରବ ଅର୍ଜନ।

## ସାମାଜିକ ସହଯୋଗ

**ଆଜୀବନ ସଦସ୍ୟ:** ଉତ୍କଳ ସାହିତ୍ୟ ସମାଜ
ଅଖିଳ ଭାରତ ଶିଶୁ ଓ କିଶୋର ସାହିତ୍ୟ ସମ୍ମିଳନୀ
ଉତ୍କଳ ସମ୍ମିଳନୀ
ଓଡ଼ିଶା ଲେଖକ ସମବାୟ ସମିତି
ଓଡ଼ିଆ ଲେଖକ ଲେଖିକା ପରିଷଦ
ଲେଖକ ସାମ୍ମୁଖ୍ୟ

**ସାଧାରଣ ସମ୍ପାଦକ:** ମହିମାଧର୍ମ ଗବେଷଣା ପରିଷଦ, ଓଡ଼ିଶା, ଭୁବନେଶ୍ୱର

**ସଭ୍ୟ:** ଭାରତ ସରକାରଙ୍କ ମାନବ ସମ୍ବଳ ବିକାଶ ମନ୍ତ୍ରଣାଳୟ ଅଧିନରେ ଥିବା ଜାତୀୟ ସାକ୍ଷରତା ମିଶନ, ନୂଆଦିଲ୍ଲୀର ସାକ୍ଷରତା ପୁସ୍ତକ ପ୍ରସ୍ତୁତି ଓ ସମୀକ୍ଷା କମିଟିର ସଭ୍ୟ ଭାବରେ ଦୀର୍ଘ ୧୨ ବର୍ଷରୁ ଉର୍ଦ୍ଧ୍ୱ କାଳ କାର୍ଯ୍ୟ କରିବାର ସୁଯୋଗ ଲାଭ।

ମହିମାଧର୍ମ ସମ୍ପର୍କରେ ମୋ ଲିଖିତ ଏକ ପ୍ରବନ୍ଧ

# ଏକେଶ୍ୱରବାଦ ମହିମାଧର୍ମ

ଜଗନ୍ନାଥ ସଂସ୍କୃତି ପରି ମହିମାଧର୍ମ ଓଡ଼ିଶାର ନିଜସ୍ୱ ଧର୍ମ ଓ ସଂସ୍କୃତି ଭାବରେ ବିବେଚିତ । ମହିମାଧର୍ମ, ଅଲେଖ ଧର୍ମ ବା କୁମ୍ଭୀପଟିଆଧର୍ମ ଭାବରେ ଆମ ରାଜ୍ୟରେ ପରିଚିତ । ଏଯାବତ୍ ପୃଥିବୀରେ ଯେଉଁ ସବୁ ଏକେଶ୍ୱର ମତବାଦ ପ୍ରଚାର ଓ ପ୍ରସାର ଲାଭ କରିଛି ତନ୍ମଧ୍ୟରେ ଆମ ଓଡ଼ିଶାର ମହିମାଧର୍ମ ଅନ୍ୟତମ । ଏହିଧର୍ମ ବିଶ୍ୱର ସର୍ବ କନିଷ୍ଠ ଧର୍ମ ଭାବରେ ବିବେଚିତ । ମହିମାଧର୍ମ ଏକ ସ୍ୱତନ୍ତ୍ର ଧର୍ମ ନୁହେଁ । ଏହା ହିନ୍ଦୁଧର୍ମରେ ସଂସ୍କାର ଆନୟନକାରୀ ଏକ ନୂତନ ମତବାଦ ବା ହିନ୍ଦୁଧର୍ମର ଏକ ନବ ସଂସ୍କରଣ ବୋଲି କହିଲେ ଅତ୍ୟୁକ୍ତି ହେବ ନାହିଁ । ହିନ୍ଦୁ ସମାଜରେ ପ୍ରଚଳିତ ଘୃଣ୍ୟ ଜାତିଭେଦ, ପ୍ରତିମାପୂଜା, ତେତ୍ରିଶ କୋଟି ଦେବଦେବୀଙ୍କ ଆରାଧନା, କଳ୍ପନା, ଉପାସନା, ବ୍ରହ୍ମଣ୍ୟ ଧର୍ମର ପ୍ରଭାବ ତଥା ବାହ୍ୟ ଆଡ଼ମ୍ବରକୁ ପ୍ରତ୍ୟାଖ୍ୟାନ ପୂର୍ବକ ଏକଶୂନ୍ୟ ବ୍ରହ୍ମଙ୍କଠାରେ ଶରଣ ବା ଆତ୍ମ ସମର୍ପଣ କରିବା ଏହି ଧର୍ମର ମୂଳତତ୍ତ୍ୱ ।

ଏହି ଧର୍ମମତରେ ବିଶ୍ୱନିୟନ୍ତା ବା ବିଶ୍ୱସ୍ରଷ୍ଟା ହେଉଛନ୍ତି ଶୂନ୍ୟ ପୁରୁଷ ବା ଅଲେଖ ପୁରୁଷ । ସେ ସର୍ବବ୍ୟାପୀ । ତାଙ୍କର ଆକାର ନାହିଁ ଏଣୁ ସେ ଅଣାକାର ବା ନିରାକାର ଭାବରେ ବିବେଚିତ । ତାଙ୍କ ଆଜ୍ଞାରେ ସଚରାଚର ବିଶ୍ୱବ୍ରହ୍ମାଣ୍ଡର ସୃଷ୍ଟି । ତାଙ୍କ ମହିମାରେ ଚନ୍ଦ୍ର, ସୂର୍ଯ୍ୟ ଓ ଗ୍ରହନକ୍ଷତ୍ରାଦି ଆତଯାତ । ତାଙ୍କ ମହିମା ଲେଖିବା ଦ୍ୱାରା ସମ୍ଭବ ନୁହେଁ । ଏଣୁ ସେ 'ଅଲେଖ' । ଅବଶ୍ୟ ଏହି ମତବାଦ ସମ୍ପର୍କରେ ଶୂନ୍ୟବାଦୀ ଅଚ୍ୟୁତାନନ୍ଦଦାସ ନିର୍ଗୁଣବାଦୀ ଚୈତନ୍ୟଦାସ, ବ୍ରହ୍ମବାଦୀ ଚନ୍ଦ୍ରମଣିଦାସ, ନିରାକାରବାଦୀ ଅରକ୍ଷିତଦାସ, ସର୍ବଧର୍ମ ସମନ୍ୱୟ ସାଧୁସୁନ୍ଦରଦାସ, ଏକବ୍ରହ୍ମବାଦୀ ଆର୍ତ୍ତଦାସ ଓ ହାଡ଼ିଦାସ ଆଦି ମହାପୁରୁଷଗଣ ସ୍ୱରଚନା ରାଜିରେ ନିର୍ଦ୍ଦେଶ ପ୍ରଦାନ କରିଥିଲେ ହେଁ ଶୂନ୍ୟ ବା ଅଲେଖବାଦକୁ ଅଗ୍ରାଧିକାର ପ୍ରଦାନପୂର୍ବକ ନୂତନ ଧର୍ମମାର୍ଗ ପ୍ରବର୍ତ୍ତନ କରିବା ନିମନ୍ତେ ସମର୍ଥ ହୋଇ ନଥିବାପରି ମନେହୁଏ । ଉପରୋକ୍ତ ମହାପୁରୁଷଗଣ ମହିମାଧର୍ମ ପ୍ରଚାରର ବହୁ ପୂର୍ବର । ଯାହା ହେଉନା କାହିଁକି, ଏହି ମହାପୁରୁଷ ମାନଙ୍କୁ ଏକେଶ୍ୱରବାଦ୍ ମହିମାଧର୍ମର ଭିତ୍ତିପ୍ରସ୍ତରଦାତା ବୋଲି ଆଖ୍ୟାୟିତ କଲେ ଅତ୍ୟୁକ୍ତି ହେବ ନାହିଁ ।

ଊନବିଂଶ ଶତାବ୍ଦୀର ମଧ୍ୟଭାଗର କଥା ।

ପ୍ରାୟ ଦେଢ଼ଶହ ବର୍ଷ ପୂର୍ବେ ଅଲେଖ ବା ନିରାକାର ତତ୍ତ୍ୱକୁ ସ୍ୱତନ୍ତ୍ର ସ୍ଥାନ ପ୍ରଦାନ କରି

ମହିମାଧର୍ମ ଆତ୍ମପ୍ରକାଶ କରିଥିଲା ଆମର ଏହି ପୂଣ୍ୟ ଉତ୍କଳ ଭୂଖଣ୍ଡରେ । ଏହି ଧର୍ମର ପ୍ରବର୍ତ୍ତକ ହେଉଛନ୍ତି ସ୍ୱୟଂ ମହିମାଗୋସାଇଁ । ମହିମାଧର୍ମର ସାଧୁସନ୍ନ୍ୟାସୀ ତଥା ଭକ୍ତମାନେ ତାଙ୍କୁ ଯୋଗେଶ୍ୱର ମହିମାପ୍ରଭୁ, ମହିମାସ୍ୱାମୀ ବା ମହିମାପ୍ରଭୁ ଭାବରେ ସମ୍ବୋଧନ କରିଥାଆନ୍ତି । ତାଙ୍କ ପ୍ରବର୍ତ୍ତିତ ଏହି ନୂତନ ଧର୍ମ ସେତେବେଳେ ସମଗ୍ର ଓଡ଼ିଶା ତଥା ପଡ଼ୋଶୀ ରାଜ୍ୟ ଆନ୍ଧ୍ର, ମଧ୍ୟପ୍ରଦେଶ ଓ ବଙ୍ଗଳାରେ ଯଥେଷ୍ଟ ପ୍ରଭାବ ପକାଇ ପାରିଥିଲା। ମହିମା ଧର୍ମ ପ୍ରଚାର ନିମନ୍ତେ ତାଙ୍କ ଆଦେଶରେ ଏହି ଧର୍ମର ଅନ୍ୟତମ ପ୍ରବୀଣ ସାହିତ୍ୟିକ ମହାତ୍ମା ଭୀମଭୋଇ ଅଲେଖ ଶୂନ୍ୟ ଓ ନିରାକାର ତତ୍ତ୍ୱ ସମ୍ବଳିତ, ବହୁ ପୁସ୍ତକମାନ ରଚନା କରିଯାଇଛନ୍ତି । ଏହି ଗ୍ରନ୍ଥ ସମୂହରେ ମହିମାଧର୍ମର ସମ୍ପୂର୍ଣ୍ଣ ଦର୍ଶନ, ଲକ୍ଷ୍ୟ, ଆଦର୍ଶ ଓ ଉପାସନା ବିଧି ସରଳ ତଥା ପ୍ରାଞ୍ଜଳ ଭାବରେ ବୟାନ ହୋଇଅଛି ।

ମହିମାଧର୍ମର ନୀତିନିୟମ ଓ ଆଚରଣ ବିଧି ଅତ୍ୟନ୍ତ ସରଳ ତଥା ବୋଧଗମ୍ୟ। ସାଧୁ ସନ୍ନ୍ୟାସୀ ଓ ଗୃହସ୍ଥ ଭକ୍ତ ମାନଙ୍କ ନିମନ୍ତେ ସ୍ୱତନ୍ତ୍ର ନୀତି-ନିୟମ, ବିଧିବିଧାନ ଉଦ୍ଦିଷ୍ଟ । ମହିମାଧର୍ମ ଜାତିଭେଦ ବା ସମାଜରେ ପ୍ରଚଳିତ ଉଚ୍ଚନୀଚ ଘୃଣ୍ୟ ଭେଦଭାବରେ ବିଶ୍ୱାସ କରେ ନାହିଁ । ସମସ୍ତେ ପରଂବ୍ରହ୍ମଙ୍କ ସନ୍ତାନ ବୋଲି ଏହି ଧର୍ମ ବିଶ୍ୱାସ କରେ । ଫଳରେ ବିଶ୍ୱନିୟନ୍ତା ପରଂବ୍ରହ୍ମଙ୍କୁ ଉପାସନା କରିବାର ଅଧିକାର ସମସ୍ତଙ୍କର ରହିଛି ବୋଲି ଏହି ଧର୍ମ ମୁକ୍ତ ଓ ଉଦାର କଣ୍ଠରେ ଘୋଷଣା କରେ । ଶ୍ରେଣୀହୀନ ସମାଜ ଗଠନ ଦିଗରେ ଏହି ଧର୍ମର ଭୂମିକା ଅତ୍ୟନ୍ତ ଗୁରୁତ୍ୱପୂର୍ଣ୍ଣ । ଏହି ଧର୍ମମୁକ୍ତ କଣ୍ଠରେ ଗାଏ -

"ଜାତି ଖୋଜିଲେ ମୁକ୍ତି ନାହିଁ ।
ମୁକ୍ତି ଖୋଜିଲେ ଜାତି ନାହିଁ ॥
ଏକ ଶୂନ୍ୟ ବ୍ରହ୍ମଙ୍କଠାରେ ଶରଣ ପଶ ।"

ସମାଜରେ ପ୍ରଚଳିତ ସମସ୍ତ କୁ-ସଂସ୍କାରକୁ ପରିହାର ପୂର୍ବକ ସକଳ ଶ୍ରେଣୀର ସକଳ ଜାତିର ନରନାରୀ ଏକତ୍ର ଉପବେଶନ ପୂର୍ବକ ଶୂନ୍ୟ ବ୍ରହ୍ମଙ୍କ ଆରାଧନା କରିବା ନିମନ୍ତେ ଏହି ଧର୍ମ ସଦାକାଳେ ଆହ୍ୱାନ କରି ଆସିଛି । ମହିମା ଧର୍ମ ନୀତି ଓ ଆଦର୍ଶରେ ବଶୀଭୂତ ହୋଇ ବହୁ ଜ୍ଞାନୀ ଓ ପଣ୍ଡିତ ବ୍ୟକ୍ତି ଗୃହ ସଂସାର, ସ୍ତ୍ରୀ, ପୁତ୍ର, କନ୍ୟା, ପିତାମାତା ଓ ପରିବାର ତ୍ୟାଗ କରି ଗୈରିକ ବସ୍ତ୍ର, ବୃକ୍ଷ ବଲ୍‌କଳ ପରିଧାନ କରି ମହିମା ଧର୍ମ ସନ୍ନ୍ୟାସୀ ଭାବରେ ଦୀକ୍ଷିତ ହୋଇ ପଦବ୍ରଜରେ ଗ୍ରାମ ଦେଶ ନଗର ଭ୍ରମଣପୂର୍ବକ ମହିମାଧର୍ମର ଅମୃତ ବାଣୀ ପ୍ରଚାର କରୁଛନ୍ତି ।

କେବଳ ଏକମାତ୍ର ବିଶ୍ୱନିୟନ୍ତା ଅଲେଖ ପରଂବ୍ରହ୍ମଙ୍କୁ ଉପାସନା କରିବାର ଅଧିକାର ସମସ୍ତଙ୍କର ଅଛି ଓ ସକଳ ଘଟରେ ପରଂବ୍ରହ୍ମ ସମାନ ଭାବରେ ବିଦ୍ୟମାନ, ଏଇଥି ପାଇଁ ମହିମାଧର୍ମ ଆଜି ଖୁବ୍ ଲୋକପ୍ରିୟ ହୋଇପାରିଛି । ପୁନଶ୍ଚ ଏହି ଧର୍ମର ନୀତି

ନିୟମ ଅନୁଯାୟୀ ପରମେଶ୍ୱରଙ୍କ ଆରାଧନା ନିମନ୍ତେ ମଠ-ମନ୍ଦିର, ଧୂପ-ଦୀପ, ଫୁଲ-ଚନ୍ଦନ, ସୁବାସ-ଅତର, ଭୋଗ-ରାଗ, ଖଇ-କଦଳୀ-ଉଖୁଡ଼ା, ମିଠା-ରସଗୋଲା, ବ୍ରାହ୍ମଣ-ପୁରୋହିତ ଆଦିଙ୍କର କୌଣସି ଆବଶ୍ୟକତା ନାହିଁ । ଏହି ଧର୍ମର ଧର୍ମଗ୍ରନ୍ଥମାନଙ୍କରେ ଉଲ୍ଲେଖ ଅଛି-

ଛତିଶ କୁଳୀ ବାଉନ ଯେ ପାଟକ
ଯେ ଅଛ ସ୍ତିରୀ ପୁରୁଷ,
ଉଚ ନୀଚ ବୋଲି ବାରଣ ନକରି
ନାମରେ ଶରଣ ପଶ ॥

× ×× ×

ସ୍ଥାବରୁ ଜଙ୍ଗମ କୀଟରୁ ପତଙ୍ଗ
ରହିଁଦେଲେ ଅନୁସରି ।
ସକଳ ଘଟରେ ପୂରି ସମାନରେ
ନୋହେ ସାନ ବଡ଼କରି ॥

× ×× ×

ମହିମାଧର୍ମାବଲମ୍ବୀମାନେ ପ୍ରତ୍ୟହ ବ୍ରାହ୍ମ ମୁହୂର୍ତ୍ତରେ ଅନନ୍ତ ଆକାଶ ତଳେ ଗୃହ ଛାୟାଶୂନ୍ୟ ଶୁଦ୍ଧ ନିଶ୍ଚଳ ସ୍ଥାନରେ ପୂର୍ବ ଦିଗକୁ ମୁଖ କରି ଅଲେଖ ପରଂବ୍ରହ୍ମଙ୍କୁ ସପ୍ତବାର ସାଷ୍ଟାଙ୍ଗ ପ୍ରଣାମ କରନ୍ତି । ସେହିପରି ସୂର୍ଯ୍ୟାସ୍ତରେ ପଶ୍ଚିମ ଦିଗକୁ ମୁଖ କରି ପ୍ରାତଃ କାଳପରି ପଞ୍ଚବାର ସାଷ୍ଟାଙ୍ଗ ପ୍ରଣିପାତ କରନ୍ତି । ମହିମାଧର୍ମର ଏହି ପ୍ରଣିପାତ ବା ଅଲେଖ ପ୍ରଭୁଙ୍କ ପ୍ରତି ହେଉଥିବା ଶରମାନ୍ୟ ପ୍ରଣାଳୀ 'ଦର୍ଶନ' ଭାବରେ ଅଭିହିତ। ଏହି ଦର୍ଶନ ବା ଶରଣ ପଦ୍ଧତି ହିଁ 'ମହିମା ପ୍ରଭୁ' ବା 'ଅଲେଖ ବ୍ରହ୍ମ'ଙ୍କ ଉପାସନା ବିଧି ଭାବରେ ଗୃହୀତ । ଏଣୁ ପରଂବ୍ରହ୍ମଙ୍କ ଏହି ଉପାସନା ନିମନ୍ତେ ଉପାସକଙ୍କୁ ଅଯଥା ଖର୍ଚ୍ଚାନ୍ତ, ମଠ ମନ୍ଦିରକୁ ଦୌଡ଼ିବା ଜନିତ ହଇରାଣ ବା ବ୍ରାହ୍ମଣ ପୁରୋହିତମାନଙ୍କ ସହାୟତା ଦରକାର ପଡ଼େ ନାହିଁ । ମହିମାଧର୍ମର ମୁଖ୍ୟପ୍ରବନ୍ଧକ ଏପରି ସରଳ ନୀତିନିୟମ ପ୍ରଣୟନ କରି ମଣିଷ ମନ ଭିତରେ ମହାନ ଭାବ ତଥା ସରଳ ଓ ସହଜ ଉପାୟରେ ଭଗବତ ଦର୍ଶନ ନିମନ୍ତେ ପଥ ଉନ୍ମୁକ୍ତ କରି ଦେଇଥିବା ହେତୁ ମହିମାଧର୍ମ ନିଶ୍ଚିତ ଭାବରେ ହିନ୍ଦୁଧର୍ମ ସମାଜରେ ସଂସ୍କାର ଆଣିପାରିଛି, ଏଥିରେ ସନ୍ଦେହ ନାହିଁ ।

ଉନବିଂଶ ଶତାବ୍ଦୀରେ ଭାରତବର୍ଷର ଧର୍ମ ଓ ସମାଜ କ୍ଷେତ୍ରରେ ପ୍ରକାଶ ପାଇଥିବା ପୁନଃ ଅଭ୍ୟୁତ୍ଥାନ ଆନ୍ଦୋଳନର (Renaisance movement) ଜଣେ ଶ୍ରେଷ୍ଠ ପୁରୋଧା ଭାବରେ ଓଡ଼ିଶାର ମହିମା ଗୋସାଇଁ ସୁପରିଚିତ । ସେ ସମୟରେ ସମାଜ

ସଂସ୍କାର ମାନଙ୍କ ମଧ୍ୟରେ ବଙ୍ଗଳାର ରାଜା ରାମମୋହନ ରାୟ, ଦ୍ୱାରକାନାଥ ଟାଗୋର, କେଶବଚନ୍ଦ୍ର ସେନ, ସ୍ୱାମୀ ବିବେକାନନ୍ଦ, ରାମକୃଷ୍ଣ, ଗୁଜୁରାଟର ସ୍ୱାମୀ ଦୟାନନ୍ଦ ସରସ୍ୱତୀ, ମହାତ୍ମା ଗାନ୍ଧୀ, ବିହାରର ମହାଦେବ ଗୋବିନ୍ଦ ରାଣାଡ଼େ ତଥା ଓଡ଼ିଶାର ମହିମା ଗୋସାଇଁ ଓ ଭୀମ ଭୋଇଙ୍କ ଭୂମିକା ଅତ୍ୟନ୍ତ ଗୁରୁତ୍ୱପୂର୍ଣ୍ଣ ।

ସେତେବେଳେ ଓଡ଼ିଶାର ମହିମା ଗୋସାଇଁ ଓ ଭୀମଭୋଇଙ୍କ ଦ୍ୱାରା ମହିମାଧର୍ମ ସମଗ୍ର ଓଡ଼ିଶା ତଥା ଓଡ଼ିଶାର ଗଡ଼ଜାତ ଅଞ୍ଚଳରେ ବହୁଳ ଲୋକପ୍ରିୟତା ଅର୍ଜନ କରିଥିଲା। ବ୍ରାହ୍ମଣ ମାନଙ୍କ ବ୍ୟତୀତ ଅନ୍ୟ ସମସ୍ତ ଜାତିର ଲୋକେ ଏହି ଧର୍ମର ମହତ୍ୱକୁ ସାଦରେ ଗ୍ରହଣକରି ନେଇଥିଲେ । ଜାତିଭେଦ ପ୍ରଥା ବର୍ଜିତ ତଥା ବହୁ ସଂସ୍କାରପୂର୍ଣ୍ଣ ନୀତି ଏହି ଧର୍ମ ଦ୍ୱାରା ପ୍ରଚାରିତ ହୋଇଥିବା ଦୃଷ୍ଟିରୁ ସମାଜରେ ନିଷ୍ପେଷିତ ହୋଇରହିଥିବା ଜାତିର ଲୋକେ ଏହି ଧର୍ମ ପ୍ରତି ପ୍ରବଳ ଭାବରେ ଆକୃଷ୍ଟ ହୋଇ ପଡ଼ିବା ସ୍ୱାଭାବିକ । ଫଳରେ ତତ୍କାଳୀନ ଶାସକ ବ୍ରିଟିଶ ସରକାରଙ୍କ ନାନା ପ୍ରଲୋଭନରେ ପ୍ରଚାରିତ ଖ୍ରୀଷ୍ଟଧର୍ମ ଓଡ଼ିଶା ଲୋକଙ୍କ ଉପରେ ବିଶେଷ ପ୍ରଭାବ ପକାଇ ପାରିନଥିଲା । ଜଣାଯାଏ ଭାରତବର୍ଷର ଅନ୍ୟରାଜ୍ୟ ତୁଳନାରେ ଓଡ଼ିଶାରେ ଖ୍ରୀଷ୍ଟ ଧର୍ମାବଲମ୍ବୀ ମାନଙ୍କ ସଂଖ୍ୟା ଖୁବ୍ କମ୍ । ସେହିପରି ଓଡ଼ିଶାର ଉପକୂଳବର୍ତ୍ତୀ ଜିଲ୍ଲାମାନଙ୍କ ଅପେକ୍ଷା ଗଡ଼ଜାତ ମାନଙ୍କରେ ଖ୍ରୀଷ୍ଟ ଧର୍ମାବଲମ୍ବୀ ମାନଙ୍କ ସଂଖ୍ୟା ବହୁତ କମ୍ । ଏପରିକି ବହୁ ଗଡ଼ଜାତ ରାଜ୍ୟରେ ଖ୍ରୀଷ୍ଟ ଧର୍ମାବଲମ୍ବୀମାନେ ଆଦୌ ଦୃଷ୍ଟିଗୋଚର ହୁଅନ୍ତି ନାହିଁ । ମହିମାଧର୍ମର ପ୍ରଚାର ଓ ପ୍ରସାର ଯୋଗୁହିଁ ଏହା ସମ୍ଭବ ହୋଇ ପାରିଛି । ନଚେତ ବ୍ରାହ୍ମଣ୍ୟ ଧର୍ମ ପ୍ରଭାବରେ ତ୍ରାହି ତ୍ରାହି ଡ଼ାକ ଛାଡୁଥିବା ହିନ୍ଦୁ ସମାଜର ନିଷ୍ପେଷିତ ଧାର୍ମିକ ଜନତା ଦିଗହରା ହୋଇ ବ୍ରିଟିଶ ସରକାର ପ୍ରଲୋଭନରେ ଧର୍ମାନ୍ତରୀ ହୋଇଯାଇ ଥାଆନ୍ତେ ।

ମହିମାଧର୍ମର ମୁଖ୍ୟ ପ୍ରଚାରକ ଭୀମଭୋଇଙ୍କ ଶାଶ୍ୱତ ବାଣୀ:

"ପ୍ରାଣୀଙ୍କ ଆରତ ଦୁଃଖ ଅପ୍ରମିତ
ଦେଖୁ ଦେଖୁ କେବା ସହୁ ।
ଏ ଜୀବନ ପଛେ ନର୍କେ ପଡ଼ିଥାଉ
ଜଗତ ଉଦ୍ଧାର ହେଉ ॥"

ସମଗ୍ର ବିଶ୍ୱ ଧାର୍ମିକ ସମାଜରେ ନୂତନ ସ୍ପନ୍ଦନ ନୂତନ ଚେତନା ନବଉଦ୍ଦୀପନା ସୃଷ୍ଟି କରେ । ତାଙ୍କର ଏହି ମହତ ମାର୍ମିକ ବାଣୀରେ ସମଗ୍ର ବିଶ୍ୱବାସୀ ବିସ୍ମୟାଭିଭୂତ। ଉତ୍କଳର ସୁଯୋଗ୍ୟ ସନ୍ତାନ ଏହି ଓଡ଼ିଆ ପୁଅଙ୍କର ବାଣୀ ଦିଲ୍ଲୀ ସାରସ୍ୱତ ପୀଠ ସାହିତ୍ୟ ଏକାଡ଼େମୀରେ ଲିପିବଦ୍ଧ ହୋଇ ଓଡ଼ିଆ ଜାତିର ଧର୍ମଦର୍ଶନ ଓ ମହନୀୟ ଭାବର ପରିଚୟ ପ୍ରଦର୍ଶନ କରୁଅଛି।



୧୯୯୬ ମସିହା ଶିଶୁ ସାହିତ୍ୟ ପାଇଁ 'ଓଡ଼ିଶା ବିଜ୍ଞାନ ଏକାଡେମୀ ପୁରସ୍କାର'
ମାନ୍ୟବର ବିଜ୍ଞାନ ଓ ପରିବେଶ ମନ୍ତ୍ରୀ ଶ୍ରୀଯୁକ୍ତ ପ୍ରସନ୍ନ କୁମାର ଦାସଙ୍କଠାରୁ ଗ୍ରହଣ



ଅଖିଳ ଭାରତ ଓଡ଼ିଆ ସାହିତ୍ୟ ପରିଷଦ 'ସାରସ୍ୱତ ସମ୍ମାନ-୨୦୧୨' ଗ୍ରହଣ
କରୁଛନ୍ତି ମୁଖ୍ୟ ଅତିଥି ବିଶିଷ୍ଟ ସାହିତ୍ୟିକ ଦେବାଶୀଷ ପାଣିଗ୍ରାହୀଙ୍କଠାରୁ




୧୯୯୮ ମସିହା ଆନ୍ତର୍ଜାତିକ ସାକ୍ଷରତା ଦିବସ ଉପଲକ୍ଷେ ଭୁବନେଶ୍ୱର ଉପକଣ୍ଠ ବାଲିଅନ୍ତାଠାରେ ଛାତ୍ରଛାତ୍ରୀମାନଙ୍କ ଶୋଭାଯାତ୍ରାରେ ଯୋଗଦାନ




୩୦.୦୭.୧୯୯୮ରେ ସାକ୍ଷରତା ପାଇଁ ନବରଙ୍ଗପୁର ଜିଲ୍ଲାର ମହିଳା ସମାବେଶରେ ଉଦ୍‌ବୋଧନ, ପାଖରେ ଅଛନ୍ତି ପୂର୍ବତନ ମନ୍ତ୍ରୀ ହବିବୁଲ୍ଲା ଖାନ୍, ଜିଲ୍ଲାପାଳ ଶ୍ରୀଯୁକ୍ତ ପାତ୍ର ଓ ସାଂସଦ ଖଗପତି ପ୍ରଧାନୀ




ବରଗଡ଼ ଠାରେ ସାକ୍ଷରତା ପାଇଁ ତାଲିମ୍ ପ୍ରଦାନ



ଓଡ଼ିଶା ବିଜ୍ଞାନ ଏକାଡେମୀ ପୁରସ୍କାର ଗ୍ରହଣ ଅବସରରେ ଅତିଥିଙ୍କ ସହ

